# କବି ବୀରକିଶୋର

ଶ୍ରୀ ପଠାଣି ପଟ୍ଟନାୟକ



ଓଡ଼ିଶା ସାହିତ୍ୟ ଏକାଡେମୀ

# କବି ବୀରକିଶୋର

ପଠାଣି ପଟ୍ଟନାୟକ



ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

**କବି ବୀରକିଶୋର**

ଲେଖକ :
ପଠାଣି ପଟ୍ଟନାୟକ

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର-୭୫୧୦୧୪

ପ୍ରଥମ ପ୍ରକାଶ—୧୯୯୪

ମୁଦ୍ରଣ :
ସଂସାର ପ୍ରେସ୍, କଟକ-୯

ମୂଲ୍ୟ : କୋଡ଼ିଏ ଟଙ୍କା

**KAVI BIRAKISHORE**

*Written by :*
Pathani Patnaik

*Published by :*
Orissa Sahitya Akademi
Bhubaneswar

First Edition—1994

*Printed at :*
Sansar Press, Cuttack-9

PRICE : Twenty Rupees

## ଅଗ୍ରଲେଖ

କବି ବୀରକିଶୋର ଓଡ଼ିଆ ସାହିତ୍ୟରେ ଜାତୀୟକବି ଭାବରେ ସୁପରିଚିତ । [illegible]ର ସ୍ୱାଧୀନତା ଆନ୍ଦୋଳନ, ଅସହଯୋଗ ଆନ୍ଦୋଳନ ଓ ଲବଣସତ୍ୟାଗ୍ରହ କାଳରେ ସେ ଅଗ୍ନିବର୍ଷୀ କବିତାର ଝଙ୍କାର ସୃଷ୍ଟିକରି ବିଦେଶୀ ସରକାର ବିରୋଧରେ ପ୍ରତ୍ୟକ୍ଷ ବିପ୍ଳବ ପାଇଁ ଜାତିପ୍ରାଣରେ ଜାତୀୟତାବୋଧର ସ୍ପନ୍ଦନ ସୃଷ୍ଟି କରିଥିଲେ । ସରଳ ଓ ଲୋକରଞ୍ଜକ ଭାଷାରେ ରଚିତ ତାଙ୍କର ଜ୍ୱାଳାମୟୀ କବିତାବଳୀ ମୁକ୍ତିକାମୀ ଜନମାନସରେ ଗଭୀର ଆଲୋଡ଼ନ ସୃଷ୍ଟି କରି ପାରିଥିଲା ।

ସ୍ୱରଚିତ କବିତା-ସଂକଳନ ମୋହନବଂଶୀ, ରଣଦୁନ୍ଦୁଭି, ରଣଭେରୀ, ବିଦ୍ରୋହୀବାଣୀ ତାଙ୍କର ଗଭୀର ଦେଶାତ୍ମବୋଧ ଓ ସ୍ୱଦେଶପ୍ରାଣତାର ସ୍ୱାକ୍ଷର ବହନ କରେ । ଏଣୁ ଯଥାର୍ଥରେ ସେ 'ଜାତୀୟ କବି' ଭାବରେ ଚିରବନ୍ଦନୀୟ ଓ ଚିରସ୍ମରଣୀୟ ।

'କବି ବୀରକିଶୋର' ଶୀର୍ଷକ ମନୋଗ୍ରାଫ୍‌ଟି ତାଙ୍କର ବିପ୍ଳବୀ ଜୀବନ ଓ କବି-ପ୍ରତିଭାର ଏକ ମନୋଜ୍ଞ ଆଲେଖ୍ୟ, ଏଥିରେ ସନ୍ଦେହ ନାହିଁ । ଏହି ପୁସ୍ତକର ରଚୟିତା ସାହିତ୍ୟ-ସାଧକ ଶ୍ରୀ ପଠାଣି ପଟ୍ଟନାୟକ, ଓଡ଼ିଆ ସାହିତ୍ୟରେ ଜଣେ ଲବ୍ଧପ୍ରତିଷ୍ଠ ପ୍ରାବନ୍ଧିକ ଓ ସମାଲୋଚକ । ସେ ବହୁ କଷ୍ଟସ୍ୱୀକାରପୂର୍ବକ ଜାତୀୟ-କବିଙ୍କର ଜୀବନ ଓ ପ୍ରତିଭାସମ୍ବଳିତ ସ୍ୱଅନୁଭୂତିରସାଣିତ ଏହି ମନୋଗ୍ରାଫ୍‌ଟି ରଚନା କରିଥିବାରୁ ପୁସ୍ତକଟିର ଆତ୍ମପ୍ରକାଶ ଅବସରରେ ଏକାଡେମୀ ତରଫରୁ ତାଙ୍କୁ ସାଧୁବାଦ ଜଣାଉଛୁ ।

ଓଡ଼ିଶାର ସାହିତ୍ୟପ୍ରେମୀ ବିଦଗ୍ଧ ସୁଧୀସମାଜରେ ଏହି ଗ୍ରନ୍ଥଟି ସମୁଚିତ ଶ୍ରଦ୍ଧା ଓ ଆଦର ଲାଭ କରିବ ବୋଲି ମୋର ଆଶା ଓ ବିଶ୍ୱାସ ।

ଇନ୍ଦୁଭୂଷଣ କର
ସଂପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

# ମୁଖବନ୍ଧ

ଓଡ଼ିଶା ରାଜ୍ୟ ସାହିତ୍ୟ ଏକାଡେମୀଙ୍କର ଅନୁରୋଧକ୍ରମେ କବି ନୀରକିଶୋରଙ୍କ ସମ୍ପର୍କରେ ଲେଖିବା ପାଇଁ ଆଗ୍ରହୀ ହେଲି । ଜାତୀୟ କବିଙ୍କ ସମ୍ପର୍କରେ ଜାତୀୟକବି ନୀରକିଶୋର ସ୍ମୃତି ସଂସଦ ''ବିପ୍ଳବର ବାର୍ତ୍ତାବହ ଜାତୀୟକବି ନୀରକିଶୋର' ସଂକଳନ ପ୍ରକାଶ କରିଥିଲେ । ସ୍ୱନାମଧନ୍ୟ ସ୍ୱାଧୀନତାସଂଗ୍ରାମୀ ଓ ଜ୍ଞାନମଣ୍ଡଳର ଲେଖକ ବିନୋଦ କାନୁନ୍‌ଗୋ ମଧ୍ୟ 'ଜାତୀୟକବି ନୀରକିଶୋର' ଶୀର୍ଷକ ଏକ ଜୀବନଚରିତ ପ୍ରକାଶ କରିଥିଲେ । ପ୍ରବୀଣ ସାମ୍ବାଦିକ ଚନ୍ଦ୍ରଶେଖର ମହାପାତ୍ରଙ୍କ ସମ୍ପାଦନାରେ 'ଜାତୀୟକବି ଅଭିନନ୍ଦନ' ସ୍ମରଣିକାରେ କବି ନୀରକିଶୋରଙ୍କ ବିଷୟରେ କିଛିଟା ଆଲୋଚନା ସ୍ଥାନିତ ହୋଇଥିଲା । କୌଣସି ଗବେଷକ ମଧ୍ୟ ଜାତୀୟକବି ନୀରକିଶୋରଙ୍କ କବିତା ଅନୁଶୀଳନ କରି ଗବେଷଣା ନିବନ୍ଧ ପ୍ରସ୍ତୁତ କରି ବିଶ୍ୱବିଦ୍ୟାଳୟ ସ୍ୱୀକୃତି ଲାଭ କରିଛନ୍ତି । ତେବେ ଏହିସବୁ ଆଲୋଚନା ସତ୍ତ୍ୱେ କବିଙ୍କର ଜୀବନଚରିତ ସମ୍ପର୍କରେ ବିସ୍ତୃତ ବିବରଣୀ ଦେଖିବାକୁ ମିଳେନାହିଁ । ପ୍ରସଙ୍ଗକ୍ରମେ କବିଙ୍କ ସମ୍ପର୍କରେ ଜାଣିବା ପାଇଁ ସ୍ୱନାମଧନ୍ୟ ମନମୋହନ ଚୌଧୁରୀ ଅନ୍ନପୂର୍ଣ୍ଣା ମହାରଣା ଏବଂ ବୈକୁଣ୍ଠନାଥ ମହାନ୍ତିଙ୍କ ଭଳି ସ୍ୱାଧୀନତା ସଂଗ୍ରାମୀଙ୍କ ସହିତ ସାକ୍ଷାତ ଆଲୋଚନା କରିଥିଲି । କବିଙ୍କର ସୁଯୋଗ୍ୟ ପୁତ୍ର ଶ୍ରୀ ନିରଞ୍ଜନ କିଶୋର ଦାସ ଏବଂ ସୁଯୋଗ୍ୟା କନ୍ୟା ତାଙ୍କର ପ୍ରକାଶିତ ଓ ଅପ୍ରକାଶିତ ଲେଖା ସମ୍ପର୍କରେ ଅବହିତ କରାଇ ଲେଖକକୁ ଅନୁଗୃହୀତ କରିଅଛନ୍ତି ।

ନୀରକିଶୋରଙ୍କର କାବ୍ୟାନୁଭୂତି ଅତ୍ୟନ୍ତ ତୀବ୍ର ଏବଂ ଶାଣିତ-ଶୈଳୀରେ ଅଭିବ୍ୟକ୍ତ ଲାଭ କରିଥିଲା । ତାହାଥିଲା ଅସହଯୋଗ ଆନ୍ଦୋଳନ କାଳର ଅଗ୍ନିଗର୍ଭବାଣୀ । ଗଙ୍ଗାପାଣିରେ ଗଙ୍ଗାଦେବୀଙ୍କୁ ତର୍ପଣ କଲାପରି କବିର କାବ୍ୟସଂସାରରେ ସନ୍ତରଣ କରି କବି ଜୀବନର ସ୍ମୃତିତର୍ପଣ କରିଅଛି ।

କେନ୍ଦୁଝର କଲୋନୀ,
କଳିକା ରୋଡ଼, କଟକ-୮

ପଠାଣି ପଟ୍ଟନାୟକ

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ୧ । ଭାରତୀୟ ଜାତୀୟତାର ଉନ୍ମେଷ | ୧-୫ |
| ୨ । ସ୍ୱଦେଶୀ ଆନ୍ଦୋଳନ ଓ ଓଡ଼ିଶା | ୬-୧୩ |
| ୩ । ଭାରତର ରାଜନୀତିକ ମଞ୍ଚ ଉପରେ ମହାତ୍ମା ଗାନ୍ଧୀ ଓ ଓଡ଼ିଶାର କଂଗ୍ରେସ ଆନ୍ଦୋଳନ | ୧୪-୧୮ |
| ୪ । କବି ବୀରକିଶୋର—ଏକ ସଂଗ୍ରାମୀ ଜୀବନର ପରିଚୟ | ୧୯-୩୬ |
| 'ସଂସାରେ ଥାଇ ମୁଁ ସଦା ଉଦାସୀନ' | |
| ସ୍ୱରାଜ୍ୟ ଆଶ୍ରମ ଓ ବୀରକିଶୋର—ସାମ୍ବାଦିକ ଓ ସମ୍ପାଦକ | |
| ବୀରକିଶୋର—ଉଚ୍ଚମାନବିକ ମୂଲ୍ୟବୋଧ ଓ ବୀରକିଶୋର | |
| ୫ । ଜାତୀୟଚେତନା—ସ୍ୱରାଜ୍ୟ ଆନ୍ଦୋଳନ ଓ ବୀରକିଶୋର | ୩୭-୫୪ |
| ବନ୍ଦେ ମାତରଂ ଓ ସ୍ୱରାଜ୍ୟ ଭାବନା | |
| ୬ । ବୀରକିଶୋରଙ୍କ ଗୀତିକବିତାର ଭୂମିକା | ୫୫-୬୦ |
| ବୀରକିଶୋରଙ୍କ କାବ୍ୟ ସାଧନାର ଅଭିମୁଖ୍ୟ | |
| ୭ । ବୀର କବିର ଅଭ୍ୟୁଦୟ | ୬୧-୬୫ |
| ୮ । ବିପ୍ଳବର ବାର୍ତ୍ତାବହ ବୀରକିଶୋର | ୬୬-୧୦୩ |
| 'ମୋହନବଂଶୀ'ର ସମ୍ମୋହନ ଧ୍ୱନି— | |
| ରଣଦୁନ୍ଦୁଭି—ଅହିଂସା ସଂଗ୍ରାମର ପାଞ୍ଚଜନ୍ୟ | |
| ରଣଭେରୀ—ଆଗାମୀ ଯୁଗର ବାର୍ତ୍ତାବହ | |
| ବିଦ୍ରୋହୀବୀଣାର ଝଙ୍କାର | |
| ଇତିହାସର ଅବିସ୍ମରଣୀୟ ସ୍ୱପ୍ନ—ସମରଯୁଗର ଅମର ସଙ୍ଗୀତ | |
| ୯ । ସାମାଜିକ ନାଟକ—ଜୀବର ଛବି | ୧୦୪-୧୧୦ |
| ୧୦ । 'ସୂତକଣିକା'—ଗାନ୍ଧୀବିଶ୍ୱରର ଅପୂର୍ବ ନୈବେଦ୍ୟ | ୧୧୧-୧୧୮ |
| ୧୧ । ଜାତୀୟ ଜୀବନର ଅଲିଭା ଜ୍ୟୋତି | ୧୧୯-୧୨୦ |


□ □

# ଭାରତୀୟ ଜାତୀୟତାର ଉନ୍ମେଷ

ଭାରତ ଏକ ପ୍ରାଚୀନ ସଭ୍ୟଦେଶ । ପୃଥିବୀର ସଭ୍ୟତାକୁ ଭାରତୀୟ ସାହିତ୍ୟ ଓ ସଂସ୍କୃତିର ମହାନ୍ ଅବଦାନ ଅବିସ୍ମରଣୀୟ । ଆଧ୍ୟାତ୍ମିକ ସାଧନା, ସାହିତ୍ୟ, କଳା, ଦର୍ଶନ, ସ୍ଥାପତ୍ୟ, ସାମରିକ ନୈପୁଣ୍ୟ, ବୈଜ୍ଞାନିକ ଅନୁଶୀଳନ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ଭାରତୀୟ ମନୀଷୀ ଯେପରି ଅନନ୍ୟସାଧାରଣ ପ୍ରତିଭାର ପରିଚୟ ପ୍ରଦାନ କରିଥିଲେ, ଇତିହାସରେ ତାହାର କ୍ୱଚିତ୍ ତୁଳନା କରାଯାଇପାରେ । ଦୀର୍ଘ ଦୁଇହଜାର ବର୍ଷର ଇତିହାସରେ ଭାରତବର୍ଷ ବାରମ୍ବାର ବହିଃଶତ୍ରୁମାନଙ୍କଦ୍ୱାରା ଆକ୍ରମିତ ଏବଂ ପଦାନତ ହୋଇଛି । ଖ୍ରୀଷ୍ଟାବ୍ଦର, ରୋମାନ୍ ଗିରିସଙ୍କଟ ବାଟେ ଗ୍ରୀସ୍, ରୋମ ଦେଶଠାରୁ ଆରମ୍ଭ କରି ଆରବ, ପାରସ୍ୟ, ଆଫଗାନିସ୍ଥାନ ଏବଂ ସର୍ବୋପରି ମଧ୍ୟ-ଏସିଆର ଯାଯାବର ଦୁର୍ଦ୍ଧର୍ଷ ଜାତିମାନଙ୍କ ଜାତି ଭାରତବର୍ଷରେ ବାରମ୍ବାର ଅଭିଯାନ ଚଳାଇ ଲୁଣ୍ଠନ କରିଛନ୍ତି । ଭାରତର ନାଗରିକ ଜୀବନ ବହୁବାର ବିପର୍ଯ୍ୟସ୍ତ ହୋଇପଡ଼ିଛି । ବିଦେଶାଗତ ଏହି ଆକ୍ରମଣକାରୀ ଶାସକବର୍ଗ ଏଠାରେ ସାମରିକ ବିଜୟ ହାସଲ କରିଥିଲେ ହେଁ ଭାରତୀୟ ସଂସ୍କୃତିର ମହାନ ସ୍ରୋତରେ ସେମାନେ କାଳକ୍ରମେ ସାମିଲ ହୋଇଯାଇଛନ୍ତି । ଆଦାନ ପ୍ରଦାନ ସୂତ୍ରରେ ଭାରତୀୟ ସମାଜ ଅର୍ଥନୈତିକ ଓ ରାଜନୈତିକ ଉତ୍ପୀଡ଼ନ ଓ ଶୋଷଣ ସତ୍ତ୍ୱେ କଳା, ସାହିତ୍ୟ, ଧର୍ମଧାରା ଓ ସଂସ୍କୃତି କ୍ଷେତ୍ରରେ ଭାରତୀୟ-ଜୀବନ ଐଶ୍ୱର୍ଯ୍ୟବନ୍ତ ହୋଇଥିବା ଜଣାଯାଏ ।

ଇଉରୋପରେ ଶିଳ୍ପବିପ୍ଳବ-ପୂର୍ବ ପର୍ଯ୍ୟନ୍ତ ଭାରତବର୍ଷ ପୃଥିବୀରେ ଅନ୍ୟତମ ଶ୍ରେଷ୍ଠ ବାଣିଜ୍ୟିକ ଜାତି ଥିଲା । ଭାରତର ପାଲଟଣା ଜାହାଜରେ ସାଧବମାନେ ସୁଦୂର ପୂର୍ବ-ଦ୍ୱୀପପୁଞ୍ଜ, ଚୀନ ଦେଶ, ମାଳୟ, ବ୍ରହ୍ମଦେଶ, ସିଂହଳ, ଏବଂ ଆଫ୍ରିକା ଉପକୂଳରେ ମଧ୍ୟ ବାଣିଜ୍ୟିକ ସମ୍ପର୍କ ସ୍ଥାପନ କରିପାରିଥିଲେ । ଇତିହାସରେ ପ୍ରାପ୍ତ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତବର୍ଷ ଏହି ଗୌରବର ଅଧିକାରୀ ଥିଲା ବୋଲି ବିଶ୍ୱାସ କରାଯାଏ । ମାତ୍ର ଦୁର୍ଭାଗ୍ୟ-କ୍ରମେ ସପ୍ତଦଶ ଶତାବ୍ଦୀ ପରେ ଭାରତୀୟ ବଣିକମାନେ ଆଉ ଏହି ସୁଯୋଗ ଲାଭ କରି ପାରିଲେ ନାହିଁ । ଇଉରୋପୀୟ ଜଳଦସ୍ୟୁମାନେ ଭାରତ ମହାସାଗରରେ ଅତ୍ୟନ୍ତ ପ୍ରଭାବଶାଳୀ ହୋଇ ଉଠିଲେ । ଭାରତର କେନ୍ଦ୍ରୀକ ଶକ୍ତି ଦୁର୍ବଳ ହୋଇପଡ଼ିବାରୁ ଏହି ଜଳଦସ୍ୟୁମାନଙ୍କ ବିରୁଦ୍ଧରେ ଫଳପ୍ରସୂ କାର୍ଯ୍ୟାନୁଷ୍ଠାନ ସମ୍ଭବ ହୋଇ ନ ଥିଲା । ଫଳରେ ଏହି ବିଦେଶୀ ଜଳଦସ୍ୟୁଗଣ ଭାରତୀୟ ନୌବହରକୁ ଧ୍ୱଂସକରି ଭାରତର ଐଶ୍ୱର୍ଯ୍ୟଲକ୍ଷ୍ମୀଙ୍କୁ ମହାସାଗର ଗର୍ଭରେ ବୁଡ଼େଇଦେଲେ ।

ବାଣିଜ୍ୟିକଜାତି ହିସାବରେ ଭାରତ ପୃଥିବୀର ବହୁ ଦେଶକୁ ପଣ୍ୟଦ୍ରବ୍ୟ ରପ୍ତାନି କରି ପ୍ରଚୁର ସୁବର୍ଣ୍ଣ ଆମଦାନି କରୁଥିଲା । ଭାରତର ବିତ୍ତମ୍ବନା ହେତୁ ବିଦେଶୀ

ବଣିକମାନେ ଭାରତୀୟ ବାଣିଜ୍ୟର ନିୟନ୍ତ୍ରକ ହେଲେ ଏବଂ ବିଦେଶୀ ଦ୍ରବ୍ୟର ବିନିମୟରେ ବିଦେଶକୁ ଭାରତୀୟ ସୁବର୍ଣ୍ଣ ରପ୍ତାନି ହେବାକୁ ଲାଗିଲା । ଭାରତରେ ଜାତୀୟ ସଂହତି ନ ଥିଲା । ଜାତୀୟ ନେତୃତ୍ୱର ଅଭ୍ୟୁଦୟ ମଧ୍ୟ ସମ୍ଭବ ନ ଥିଲା । ତେଣୁ ଏହି ବିଦେଶୀ ବଣିକମାନେ ଅକ୍ଳେଶରେ ଭାରତର ବିଭିନ୍ନ ପ୍ରାନ୍ତରେ ଏକଚାଟିଆ ବାଣିଜ୍ୟ କାରବାର କରୁ କରୁ କାଳକ୍ରମେ ରାଜନୈତିକ ଅଧିକାର ସାବ୍ୟସ୍ତ କରିବାକୁ ଲାଗିଲେ । ତେବେ ପରିଶେଷରେ ଡଚ୍, ପର୍ତ୍ତୁଗୀଜ, ଫରାସୀ ବାଣିଜ୍ୟଗୋଷ୍ଠୀକୁ ପରାଭୂତ କରି ଇଂରେଜ ବଣିକଦଳ ଏ ଦେଶରେ ଶାସନକ୍ଷମତା ବିସ୍ତାର କଲେ ଏବଂ ଅଳ୍ପକାଳ ମଧ୍ୟରେ ଇଂରେଜ ସାମ୍ରାଜ୍ୟବାଦ ସମଗ୍ର ଭାରତବର୍ଷରେ ନିଜର ପ୍ରତିପତ୍ତି ପ୍ରତିଷ୍ଠାକଲେ । ଇତିହାସର ଏହି ବିପର୍ଯ୍ୟୟ-ସ୍ରୋତରେ ୧୫୬୮ ଖ୍ରୀଷ୍ଟାବ୍ଦରୁ ଓଡ଼ିଶାରେ ସ୍ୱାଧୀନ ଗଜପତି ରାଜତ୍ୱର ବିଲୋପ ହୋଇ ମୁସଲମାନ-ଆଫଗାନ ଶାସନର ଦେଢ଼ଶହବର୍ଷ ଏବଂ ମରହଟ୍ଟାଙ୍କ ଅଧୀନରେ ପଚାଶବର୍ଷ ଶାସନ ଚାଲିଲା । ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଇଂରେଜମାନଙ୍କର କରଗତ ହୋଇଥିଲା ।

ଊନବିଂଶ ଶତାବ୍ଦୀ ବେଳକୁ ସମଗ୍ର ଭାରତୀୟ ଜାତି ଏକ ଦୁର୍ବଳ କୃଷିଭିତ୍ତିକ ସମାଜରେ ପରିଣତ ହୋଇଗଲା । ଚତୁର୍ଦ୍ଦିଗରେ ଏକପ୍ରକାର ଅବସାଦ ଏବଂ ଗଭୀର ଆତ୍ମ-ବିସ୍ମୃତ ଭାବ ରାଜୁପଣ କରୁଥାଏ । ଇଂରେଜମାନେ ନିଜର ସ୍ୱାର୍ଥରକ୍ଷା ପାଇଁ ଅତ୍ୟନ୍ତ ନିର୍ମମ ଭାବରେ ଭାରତର ବଣିକଜାତିକୁ ସଂହାର କରୁଥାନ୍ତି । ୧୮୪୧ ଖ୍ରୀଷ୍ଟାବ୍ଦରେ ତତ୍କାଳୀନ ବ୍ରିଟେନର ଅର୍ଥମନ୍ତ୍ରୀ Labouchere ଭାରତର ଏହି ଦୁର୍ଦ୍ଦଶା ବର୍ଣ୍ଣନା କରି କହିଥିଲେ—

"The British have utterly destroyed the manufacturers of India by their manufacturers. The district of Dacca, The Manchester of India has dwindled into insignificance before the strides which the British goods have made."

ସେତେବେଳକୁ ଇଂରେଜମାନେ ଏକ ସୁଦୃଢ଼ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରି-ପାରିନାହାନ୍ତି । ଚତୁର୍ଦ୍ଦିଗରେ ଚରମ ଦାରିଦ୍ର୍ୟ ଏବଂ ଶାସନଗତ ଅବ୍ୟବସ୍ଥା ରାଜୁପଣ କରୁଥାଏ । ଦେଶକୁ ଶୋଷଣ କରି, ପୀଡ଼ନ କରି, ବ୍ରିଟେନକୁ ଅର୍ଥ ବୋହିନେବା ଥାଏ ଇଂରେଜ ଶାସକମାନଙ୍କର ପ୍ରଧାନ ଲକ୍ଷ୍ୟ । ଚତୁର୍ଦ୍ଦିଗରେ ଉତ୍କଟ ଦାରିଦ୍ର୍ୟ ଏବଂ ନିରୁତ୍ସାହିତ ଭାବ । ନିଜର ଦାବି ଓ ଅଧିକାର ସମ୍ପର୍କରେ ମଧ୍ୟ ଏ ଜାତି ସେତେବେଳକୁ ଚେତନଶୀଳ ନ ଥିଲା । ସେ କାଳରେ ଏହି ଜାତୀୟ ଦୁର୍ଦ୍ଦଶାକୁ ବର୍ଣ୍ଣନା କରି ଭାରତୀୟ ନବଜାଗରଣର ମାନ୍ତ୍ରିକ ସ୍ୱାମୀ ବିବେକାନନ୍ଦ କହିଥିଲେ—

"Moving about here and there emaciated figures of young and old in tattered rags, whose faces bear deep-cut lines of the despair of poverty of hundreds of years; cows, bullocks, buffaloes common every where. The same melancholy look in their eyes, the same feeble physique, on the wayside, refuse and dust. This is our Present day India X X X Devastation by violent plague and cholera, malaria eating into the very vitals of the nation, starvation and semi-starvation as second nature; death-like famine often dancing its tragic dance···A conglomeration of three hundred million souls resembling men only in appearance, crushed out of life by being downtrodden by their own people and foreign nations—without any hope, without any past, without any future."

କ୍ରମେ ଭାରତରେ ଇଂରେଜ ଶିକ୍ଷାର ବିସ୍ତାର ଯୋଗୁଁ ଏକ ମଧ୍ୟବିତ୍ତ ଶିକ୍ଷିତ-ଗୋଷ୍ଠୀଙ୍କର ଅଭ୍ୟୁଦୟ ହେଲା । ଇଂରେଜ ଶାସକବର୍ଗ ଭାରତୀୟଙ୍କୁ ହୀନ ଚକ୍ଷୁରେ ଦେଖୁଥିଲେ ଏବଂ ନିଜକୁ ସଭ୍ୟ, ସମ୍ଭ୍ରାନ୍ତ ଏବଂ ଉଚ୍ଚଶ୍ରେଣୀର ମନେକରି ଭାରତୀୟମାନଙ୍କଠାରୁ ଟିକିଏ ଦୂରେଇ ରହୁଥିଲେ । ଏପ୍ରକାର ତାଚ୍ଛଲ୍ୟ ଆଚରଣ ଶିକ୍ଷିତ ଭାରତୀୟମାନଙ୍କର ମନରେ ଗଭୀର ପ୍ରତିକ୍ରିୟା ସୃଷ୍ଟିକରିବା ସ୍ୱାଭାବିକ । ସେମାନେ ସ୍ୱତଃ ଜାତୀୟ ଭାବନାରେ ଉଦ୍‌ବୁଦ୍ଧ ହେଲେ । ସେମାନଙ୍କ ପ୍ରାଣକୁ ବିବେକାନନ୍ଦଙ୍କର ଉଦାରବାଣୀ ସ୍ପର୍ଶକଲା –

"If there is a sin in the world, it is weakness; avoid all weakness. Weakness is a sin, weakness is death, and here is the test of truth—anything that makes you weak physically, intellectually and spiritually, reject as poison. There is no life in it, it cannot be true."

ଏକ ଦୁର୍ବଳ ଜାତି କେବଳ ଅତୀତର ଗୌରବକୁ ସ୍ମରଣକରି ଆତ୍ମପ୍ରସାଦ ଲାଭକରିଥାଏ । ବିବେକାନନ୍ଦ ଏଭଳି ମନୋଭାବକୁ ନିରୁତ୍ସାହିତ କରି ଭାଷଣ ଦେଉଥିଲେ । କ୍ରମେ ଦେଶରେ ଇଂରେଜୀ ଶିକ୍ଷାର ପ୍ରଚାରହେବା ସଙ୍ଗେସଙ୍ଗେ ଇଂରେଜୀଶିକ୍ଷାପ୍ରାପ୍ତ ଯୁବକଯୁବତୀଗଣ ପାଶ୍ଚାତ୍ୟ ଗଣତାନ୍ତ୍ରିକ ଭାବଧାରାରେ ଅଧିକରୁ ଅଧିକ ଉଦ୍‌ବୁଦ୍ଧ ହେଲେ ।

ସେମାନଙ୍କ ମଧ୍ୟରେ ଜାତୀୟତାଭାବର ଉଦ୍ରେକ ହେଲା । ସେମାନେ ଉପରେ ଏକ ସାମ୍ରାଜ୍ୟବାଦୀ ଶକ୍ତିଦ୍ୱାରା ଲାଞ୍ଛିତ ଏବଂ ଉତ୍ପୀଡ଼ିତ, ସେ କଥା ମର୍ମେ ମର୍ମେ ଉପଲବ୍ଧି କରି ତହିଁର ନିରାକରଣ ପାଇଁ ଉପାୟ ଚିନ୍ତା କରିବାକୁ ଲାଗିଲେ । ତଥାପି ଅଗ୍ରଗାମୀ ପାଶ୍ଚାତ୍ୟ ଜାତିଙ୍କ ବିଭବ ଓ ଐଶ୍ୱର୍ଯ୍ୟ ଏସିଆବାସୀଙ୍କର ପ୍ରାଣରେ ଏକ ପ୍ରକାର ହୀନମନ୍ୟତାର ଗ୍ଲାନି ସୃଷ୍ଟିକରୁଥାଏ । ଏହି ସମୟରେ ଭାରତବର୍ଷରେ A. O. Hume ନାମରେ ଜଣେ ଅବସରପ୍ରାପ୍ତ ଇଂରେଜ ରାଜକର୍ମଚାରୀଙ୍କ ଉଦ୍ୟମରେ ୧୮୮୫ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଷ୍ଠା ହୁଏ ବମ୍ବେ ନଗରୀରେ । ଏହାର ପ୍ରଥମ ଅଧିବେଶନରେ ଡବ୍ଲ୍ୟୁ. ସି. ବାନାର୍ଜି ସଭାପତିତ୍ୱ କରନ୍ତି । କ୍ରମେ ଏହି ଅନୁଷ୍ଠାନ ସମଗ୍ର ଭାରତବର୍ଷର ଜାତୀୟତାବାଦୀ ନେତାମାନଙ୍କର ମିଳନ ମଞ୍ଚରେ ରୂପାନ୍ତରିତ ହୋଇ ଦୀର୍ଘକାଳ ସଂଗ୍ରାମ ପରେ ସ୍ୱାଧୀନତା ହାସଲ କରିପାରିଥିଲା ।

ଏହି କାଳରେ ସମସ୍ତ ଜାତୀୟତା ଆନ୍ଦୋଳନର ପ୍ରଧାନ ପୀଠ ଥିଲା ଭାରତର ରାଜଧାନୀ କଲିକତା । ସେତେବେଳେ ବଙ୍ଗ ପ୍ରଦେଶ ସହିତ ଆସାମ, ବିହାର, ଓଡ଼ିଶା ଏବଂ ବଙ୍ଗଦେଶ ଏକାଠି ହୋଇ ରହିଥିଲେ । ଇଂରେଜଶାସକବର୍ଗ ଏହି ଜାତୀୟ-ଆନ୍ଦୋଳନକୁ ଦୁର୍ବଳ କରିବା ଉଦ୍ଦେଶ୍ୟରେ ବିଶାଳ ବଙ୍ଗପ୍ରଦେଶକୁ ଦୁଇ ଭାଗ କରି-ଦେଲେ । ୧୯୦୫ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୬ ତାରିଖରେ ବଙ୍ଗ ପ୍ରଦେଶ ବିଭାଜନ କାର୍ଯ୍ୟକାରୀ କରାଗଲା । ଫଳରେ କଲିକତାକୁ କେନ୍ଦ୍ର କରି ସମଗ୍ର ଦେଶରେ ବଙ୍ଗ ବିଭାଜନ ବିରୁଦ୍ଧରେ ପ୍ରବଳ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ଦେଶରେ ସନ୍ତ୍ରାସବାଦୀମାନେ ସରକାରୀ ନୀତି ବିରୁଦ୍ଧରେ ଅଧିକ ସଂଗଠିତ ହୋଇ ବିଦ୍ରୋହ ଘୋଷଣାକଲେ । ବିଦେଶୀ ଦ୍ରବ୍ୟ ବିରୁଦ୍ଧରେ ମଧ୍ୟ ଆନ୍ଦୋଳନ କଠୋର ହେଲା । ନିଖିଳ ଭାରତ କଂଗ୍ରେସ ବଙ୍ଗ ଭଙ୍ଗ ନୀତି ବିରୁଦ୍ଧରେ ପ୍ରବଳ ପ୍ରତିକ୍ରିୟା ପ୍ରକାଶକଲେ । ଇଂରେଜ ଶାସକବର୍ଗ ଅତ୍ୟନ୍ତ କଠୋର ହସ୍ତରେ ଏହି ଆନ୍ଦୋଳନକୁ ଦମନ କରିବାକୁ ଚେଷ୍ଟାକରିଥିଲେ ହେଁ ଶେଷରେ ପ୍ରବଳ ଜାତୀୟତାବାଦୀ ଶକ୍ତି ନିକଟରେ ପରାଜୟ ସ୍ୱୀକାର କରି ୧୯୧୧ ଖ୍ରୀଷ୍ଟାବ୍ଦରେ ବଙ୍ଗଭଙ୍ଗ ପ୍ରସ୍ତାବକୁ ରଦ୍ଦକରିଦେଲେ ; ଅଥଚ ସେହି ପ୍ରସ୍ତାବରେ ବିହାର-ଓଡ଼ିଶା ବୋଲି ସ୍ୱତନ୍ତ୍ର ପ୍ରଦେଶ ଗଠନକରାଗଲା ଏବଂ କଲିକତା ପରିବର୍ତ୍ତେ ନୂତନ ଦିଲ୍ଲୀ ହେଲା ଭାରତର ରାଜଧାନୀ ।

ଏହି ସ୍ୱଦେଶୀ ଆନ୍ଦୋଳନ ପ୍ରଥମ ଅବସ୍ଥାରେ ଏକମାତ୍ର କଂଗ୍ରେସ ଆରମ୍ଭ କରିଥିଲା ବୋଲି କହିବା ଠିକ୍ ନୁହେଁ । ଏହି ସମୟରେ ଦେଶର ବିଭିନ୍ନ ଅଞ୍ଚଳରେ ବହୁ ସ୍ଥାନୀୟ ଅନୁଷ୍ଠାନ ସଭା ସମ୍ମିଳନୀ କରି ଏହି ଭାବଧାରାକୁ ବଞ୍ଚାଇ ରଖିଥିଲେ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ବହୁ ଜାତୀୟତାବାଦୀ ସମ୍ବାଦପତ୍ର ସ୍ୱଦେଶୀ ଆନ୍ଦୋଳନ ପାଇଁ ଅଗ୍ରଲେଖା ପ୍ରକାଶ କରୁଥିଲେ । ପରବର୍ତ୍ତୀ କାଳରେ ଜାତୀୟ କଂଗ୍ରେସର ସୁବିଖ୍ୟାତ ନେତା ସୁରେନ୍ଦ୍ରନାଥ

ବାନାର୍ଜୀ ୧୮୮୭ ଖ୍ରୀଷ୍ଟାବ୍ଦରେ ବଙ୍ଗ ଜାତୀୟ ସମ୍ମିଳନୀ (ବଙ୍ଗବାସୀମାନଙ୍କର ସମସ୍ୟା ଆଲୋଚନା କରି ସରକାରଙ୍କ ପାଖରେ ଦାବି ଉପସ୍ଥାପନ କରିବା ପାଇଁ) ପ୍ରତିଷ୍ଠା କରିଥିଲେ । ପରବର୍ତ୍ତୀ କାଳରେ ୧୯୦୩ ସାଲରେ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଓଡ଼ିଶାରେ ଉତ୍କଳ ସମ୍ମିଳନୀ ମଧ୍ୟ ଗଠନକରାଯାଇଥିଲା । ଓଡ଼ିଆ ଲୋକମାନଙ୍କର ସମସ୍ୟାର ସମାଧାନ ପାଇଁ ଅବଶ୍ୟ ଉତ୍କଳ ସମ୍ମିଳନୀର ବହୁପୂର୍ବରୁ ଓଡ଼ିଶାରେ ଉତ୍କଳସଭା ଓ ଉତ୍କଳ ହିତୈଷିଣୀ ସମାଜ ଆଦି ସଂଗଠନ ଓଡ଼ିଆମାନଙ୍କ ସ୍ୱାର୍ଥର ସୁରକ୍ଷା ପାଇଁ କାର୍ଯ୍ୟ କରୁଥିଲେ । ସେ କାଳରେ ଭାରତର ପ୍ରତ୍ୟେକ ପ୍ରାନ୍ତରେ କଂଗ୍ରେସ ସଂଗଠନର ଶାଖା ଗଠନ କରାଯାଇ ନ ଥିଲା । କିନ୍ତୁ ଆଞ୍ଚଳିକ ଜାତୀୟତାବାଦୀ ସଂଗଠନଗୁଡ଼ିକ ପ୍ରତ୍ୟେକ ବର୍ଷ କଂଗ୍ରେସ ଅଧିବେଶନକୁ ପ୍ରତିନିଧି ପ୍ରେରଣ କରି ଆଲୋଚନାରେ ଅଂଶଗ୍ରହଣ କରୁଥିଲେ । ଓଡ଼ିଶାର ଉତ୍କଳସଭାର ସଭ୍ୟମାନେ ୧୮୮୭ ମସିହାଠାରୁ ୧୯୦୩ ମସିହା ପର୍ଯ୍ୟନ୍ତ ଧାରାବାହିକ ଭାବରେ ଜାତୀୟ କଂଗ୍ରେସର ପ୍ରତ୍ୟେକ ଅଧିବେଶନରେ ଯୋଗଦେଇଥିବା ଜଣାଯାଏ ।

---

# ସ୍ୱଦେଶୀ ଆନ୍ଦୋଳନ ଓ ଓଡ଼ିଶା

ନାନା କାରଣରୁ ଇଂରେଜ ଶାସକବର୍ଗ ୧୮୦୩ ସାଲରୁ ଓଡ଼ିଶା ଅଧିକାର କରିଥିଲେ ହେଁ ତାହାର ବିକାଶ ଆଡ଼କୁ ଆଦୌ ଧ୍ୟାନ ଦେଇ ନ ଥିଲେ । ଏହାର ଏକ ପ୍ରଧାନ କାରଣ ଥିଲା—ଓଡ଼ିଶା ଦଖଲ କଲାପରେ ଦୀର୍ଘ ପଚାଶ ବର୍ଷ କାଳ ଓଡ଼ିଆମାନେ ସ୍ୱାଧୀନତା ଫେରି ପାଇବା ଆଶାରେ ଇଂରେଜ ରାଜଶକ୍ତି ବିରୁଦ୍ଧରେ ସାମୟିକ ବିଦ୍ରୋହ କରି ଚାଲିଥିଲେ । ଶକ୍ତିଶାଳୀ ଇଂରେଜ ରାଜଶକ୍ତି କଠୋର ହସ୍ତରେ ଏହି ଆନ୍ଦୋଳନକୁ ବାରମ୍ବାର ଦମନ କରୁଥିଲେହେଁ ଓଡ଼ିଶାରେ ବିଦ୍ରୋହ ଅଗ୍ନି ସମ୍ପୂର୍ଣ୍ଣ ଭାବେ ପ୍ରଶମିତ ହୋଇପାରୁ ନ ଥିଲା । ୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ଦଖଲ କଲେହେଁ, କ୍ଷୁଦ୍ର ହରିଶପୁରର ରାଜା ନୀଳକଣ୍ଠ ମର୍ଦ୍ଦରାଜ ଇଂରେଜ କର୍ତ୍ତୃପକ୍ଷଙ୍କ ଆଦେଶ ଅମାନ୍ୟ କରି ସଲାମୀ ପାଉଣା ଦେଲେ ନାହିଁ । ଫଳରେ ୧୮୦୫ରେ ରାଜାଙ୍କୁ ବନ୍ଦୀ କରାଯାଇ ଜମିଦାରୀ ଖାସ୍ ହୋଇଗଲା । ସେହିପରି ଖୋର୍ଦ୍ଧା ରାଜାଙ୍କ ମନ୍ତ୍ରୀ ଜୟୀ ରାଜଗୁରୁ ଇଂରେଜଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । ରାଜା ଦ୍ୱିତୀୟ ମୁକୁନ୍ଦଦେବ ୧୮୦୫ ଖ୍ରୀଷ୍ଟାବ୍ଦରେ ବନ୍ଦୀ ହେଲେ ଏବଂ ସେନାପତି ରାଜଗୁରୁଙ୍କୁ ଫାଶୀ ଦିଆଗଲା । ଏହିଦିନଠାରୁ ଖୋର୍ଦ୍ଧା ଜମିଦାରୀ ଖାସ୍‌ରେ ପରିଣତ ହେଲା । ଏହି ଦମନ ଫଳରେ ଖୋର୍ଦ୍ଧାର ଜନସାଧାରଣ କିଛି କାଳ ପାଇଁ ନୀରବ ରହିଥିଲେ ହେଁ ୧୮୧୭ ଖ୍ରୀଷ୍ଟାବ୍ଦରେ ସେନାପତି ବକ୍‌ସି ଜଗବନ୍ଧୁଙ୍କ ନେତୃତ୍ୱରେ ବିଦ୍ରୋହ ଘୋଷଣା କଲେ । ଇତିହାସରେ ଏହା ପାଇକ ବିଦ୍ରୋହ ନାମରେ ସୁପରିଚିତ । ୧୮୨୫ ମସିହା ପର୍ଯ୍ୟନ୍ତ ଜଗବନ୍ଧୁ ଆତ୍ମଗୋପନ କରି ଇଂରେଜଶାସକଙ୍କ ମନରେ ଆତଙ୍କ ସୃଷ୍ଟିକରିଥିଲେ ବୋଲି ଜଣାଯାଇଛି । ପରିଶେଷରେ ସେ ଆତ୍ମସମର୍ପଣ କରିବାରୁ ବିଦ୍ରୋହର ଅବସାନ ଘଟିଲା । ୧୮୩୧ ସାଲରେ ପାରଳାଖେମୁଣ୍ଡି, ୧୮୩୫ରେ ଘୁମୁସର, ୧୮୪୬ରେ ଅନୁଗୁଳ ଏବଂ ବୌଦ୍ଧ ପ୍ରଭୃତି ରାଜ୍ୟ ଇଂରେଜଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିବା ଜଣାଯାଏ । ମୋଟ ଉପରେ ୧୮୫୭ ସାଲରେ ସିପାହୀବିଦ୍ରୋହ ପର୍ଯ୍ୟନ୍ତ ଓଡ଼ିଶାରେ ଇଂରେଜମାନେ ଶାନ୍ତିରେ ଅବସ୍ଥାନ କରିପାରି ନ ଥିଲେ ।

ଓଡ଼ିଶାବାସୀ ଅବହେଳିତ ହେବାର ଅନ୍ୟତମ କାରଣ ହେଲା—ଏକ ସମୟରେ ସମଗ୍ର ଓଡ଼ିଆଭାଷୀ ଅଞ୍ଚଳ ଇଂରେଜ ରାଜଶକ୍ତିର ଅଧୀନକୁ ଆସି ନ ଥିଲା । ୧୮୦୩ର ବହୁ ପୂର୍ବରୁ ଗଞ୍ଜାମ ଓ କୋରାପୁଟ ଅଞ୍ଚଳ ମାନ୍ଦ୍ରାଜ ସହିତ ଯୁକ୍ତ ରହି ଇଂରେଜଙ୍କଦ୍ୱାରା ଶାସିତ ହେଉଥିଲା । ୧୮୪୭ ପର୍ଯ୍ୟନ୍ତ ଅନୁଗୁଳ ଓ ସମ୍ବଲପୁର ସିଧାସଳଖ ଇଂରେଜ ଶାସନାଧୀନ ହୋଇ ନ ଥିଲା । ୧୮୧୭ ମସିହା ପର୍ଯ୍ୟନ୍ତ ବଲାଙ୍ଗିର ଓ ସମ୍ବଲପୁର ଅଞ୍ଚଳର ଗଡ଼ଜାତଗୁଡ଼ିକ ମରହଟ୍ଟାଙ୍କ ଅଧୀନରେ ଶାସିତ ହେଉଥିଲା । ୧୮୦୩ ସାଲରେ

ଇଂରେଜମାନେ ମରହଟ୍ଟାମାନଙ୍କୁ ପରାସ୍ତ କରି କେବଳ କଟକ, ପୁରୀ, ବାଲେଶ୍ୱରର ଶାସକ ହେଲେ । ମୋଟ ଉପରେ ଓଡ଼ିଆଭାଷୀ ଅଞ୍ଚଳ ଶାସନ ସୂତ୍ରରେ ଏକାଠି ନ ଥିବାରୁ ସ୍ୱଭାବତଃ ଅବହେଳିତ ହେଉଥିଲେ । ତେଣୁ ଓଡ଼ିଆଭାଷୀ ଅଞ୍ଚଳର ଏକୀକରଣ ପାଇଁ ଓଡ଼ିଶାର ଜାତୀୟତାବାଦୀ ଅନୁଷ୍ଠାନ ଓ ପତ୍ରପତ୍ରିକା ଦାବି କରି ଆସୁଥିଲେ । ୧୮୭୪ ମସିହାରେ ଆସାମକୁ ବଙ୍ଗଳାଠାରୁ ପୃଥକ୍ କରାଯାଇ ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଗଲେ ହେଁ ଓଡ଼ିଶାର ଦାବି ଅବହେଳିତ ହୋଇ ରହିଗଲା । ୧୮୬୦ ମସିହା ବେଳକୁ ଭାରତ ସରକାରଙ୍କର ଜଣେ ବିଶିଷ୍ଟ ରାଜକର୍ମଚାରୀ ରାଜେନ୍ଦ୍ରଲାଲ ମିତ୍ର ଓଡ଼ିଆଭାଷା ପ୍ରଚଳନ ଉଠାଇଦେବା ପାଇଁ ମତବ୍ୟକ୍ତ କରିଥିଲେ । ଏହି ବିଷୟରେ "ଉତ୍କଳ ଭାଷାର ଉନ୍ନତି ପ୍ରତି ବ୍ୟାଘାତ" ଶୀର୍ଷକ ସମ୍ପାଦକୀୟରେ ଉତ୍କଳ ଦୀପିକା ୩୦ । ୩ । ୧୮୭୧ ତାରିଖ ଦିନ ତାଙ୍କ ମତର ତୀବ୍ର ପ୍ରତିବାଦ କରି ଲେଖିଥିଲେ—"ବାବୁ ରାଜେନ୍ଦ୍ରଲାଲ ମିତ୍ର ସେଦିନ ସଭାରେ (କଟକ ଡିବେଟିଂ କ୍ଲବ୍) ବ୍ୟକ୍ତ କଲେ ଯେ ଉତ୍କଳର ଯଥାର୍ଥ ହିତାକାଂକ୍ଷୀ ଯେ ହେବେ, ସେ ସର୍ବାଗ୍ରେ ଉତ୍କଳଭାଷା ଉଠାଇ ଦେଇ ଓଡ଼ିଶାରେ ବଙ୍ଗ ଭାଷା ପ୍ରଚଳନକରିବା ପାଇଁ ଚେଷ୍ଟା କରିବେ, କାରଣ ତାଙ୍କ ମତରେ ଯେତେ କାଳ ଉତ୍କଳ ଭାଷା ଉଠିଯାଇ ନାହିଁ, ତେତେକାଳ ଏ ଅଞ୍ଚଳର ଉନ୍ନତି ହେବା ଅସମ୍ଭବ । ସେ ଆପଣା ମତର ପୋଷକତାରେ ଏହି ହେତୁ ଦର୍ଶାଇଲେ ଯେ ଦୁର୍ଭିକ୍ଷ କମିଶନଙ୍କ ଗଣନାନୁସାରେ ଉତ୍କଳର ଲୋକସଂଖ୍ୟା ବର୍ତ୍ତମାନ କୋଡ଼ିଏ ଲକ୍ଷ ଅଟଇ ଓ ଏଥିରୁ ସ୍ତ୍ରୀ ବାଳକ ଇତ୍ୟାଦି ବାଦ ଦେଲେ କେବଳ ଦଶବାର ଲକ୍ଷ ଲୋକ ଲେଖାପଢ଼ା ଜାଣିବାର ସମ୍ଭବ । କିନ୍ତୁ ଏତେକ ଲୋକ କି ଗୋଟିଏ ସ୍ୱତନ୍ତ୍ର ଭାଷା ରଖିପାରନ୍ତି ? ଅଳ୍ପ ଗ୍ରାହକ ଥିବାରୁ ଏଠାରେ କେହି ନୂତନ ପୁସ୍ତକାଦି କରି କୃତକାର୍ଯ୍ୟ ହେବା ଅସମ୍ଭବ । ବଙ୍ଗଦେଶ ବହୁ ବିସ୍ତୃତ ଓ ତାର ଲୋକସଂଖ୍ୟା ଅଧିକ ବୋଲି ସେଠାରେ ଭାଷାର ଏତାଦୃଶ ଉନ୍ନତି ହୋଇଅଛି । ଯେବେ ଉତ୍କଳରେ ବଙ୍ଗ ଭାଷା ପ୍ରଚଳ ହୁଅଇ, ତେବେ ବଙ୍ଗଦେଶର ପୁସ୍ତକମାନ ଏଠାରେ ଚଳିବ ଓ ଏଠା ଲୋକେ ଅନାୟାସରେ ଉତ୍ତମ ପୁସ୍ତକ ପାଇପାରିବେ । ଏହାର ଉଦାହରଣ ସ୍ୱରୂପ ଉକ୍ତ ବାବୁ କହିଲେ ଯେ ବଙ୍ଗଦେଶରେ ଗତ ତିନି ମାସରେ ପ୍ରାୟ ୩୦୦ ଖଣ୍ଡ ବଙ୍ଗ ପୁସ୍ତକ ମୁଦ୍ରିତହେଲା, କିନ୍ତୁ ଉତ୍କଳରେ ତିନି ଚାରିଖଣ୍ଡରୁ ଅଧିକ ନ ହେଲା । ଏଥିରୁ ସ୍ପଷ୍ଟ ପ୍ରମାଣ ଯେ ଉତ୍କଳ ଭାଷାର କଦାଚ ଉନ୍ନତି ହୋଇ ନ ପାରେ । ସମ୍ପାଦକ ବହୁ ପ୍ରମାଣ ପ୍ରଦାନ କରି ରାଜେନ୍ଦ୍ରଲାଲଙ୍କ ଯୁକ୍ତିଗୁଡ଼ିକ ଖଣ୍ଡନ କରି ସାରି ଲେଖିଛନ୍ତି—ଅତଏବ ଆମ୍ଭେମାନେ କହୁଅଛୁ ଯେ ରାଜେନ୍ଦ୍ରବାବୁଙ୍କ ମତ ଅତ୍ୟନ୍ତ ଭ୍ରମମୂଳକ ଓ ଯେଉଁମାନେ ସେଥିର ଅନୁଗାମୀ ହୋଇଛନ୍ତି, ସେମାନେ ନିରର୍ଥକ କୁହୁଡ଼ିରେ ପଡ଼ି କେବଳ ଆପଣା ହସ୍ତପଦକୁ କ୍ଲେଶ ଦେଉଅଛନ୍ତି[୧] ।"

---

୧ । ଉନବିଂଶ ଶତାବ୍ଦୀର ଓଡ଼ିଶା—୧ମ ଭାଗ—ସୂର୍ଯ୍ୟନାରାୟଣ ଦାସ-୧୯୬୧—ପୃ. ୧୪୩-୧୪୪

ଊନବିଂଶ ଶତାବ୍ଦୀର ଓଡ଼ିଶାର ରାଜନୈତିକ ଓ ସାମାଜିକ ଅବସ୍ଥା ପର୍ଯ୍ୟାଲୋଚନା କରି ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ମତବ୍ୟକ୍ତ କରିଥିଲେ ଏହିପରି—"ଇଂରେଜମାନେ ଖ୍ରୀ ୧୮୦୩ରେ ଓଡ଼ିଶାକୁ ଜୟ କରିଥିଲେ । ଏହାର ୫୦-୬୦ ବର୍ଷ ପରେ ମଧ୍ୟ ଓଡ଼ିଶାର ଉନ୍ନତି ପାଇଁ ଇଂରେଜଶାସକମାନେ ଉଲ୍ଲେଖଯୋଗ୍ୟ କିଛି କରି ନ ଥିଲେ । ଉଦାସୀନତା-ହିଁ ଏହାର ଏକ ପ୍ରଧାନ କାରଣ । ପୂର୍ବେ ମୁସଲମାନ ଓ ମରହଟ୍ଟା ଅମଳରେ ଯେଉଁ ଶିକ୍ଷା ପ୍ରଣାଳୀ ପ୍ରବର୍ତ୍ତିତ ଥିଲା, ତାହା ମୋଟାମୋଟି ଭାବରେ ପ୍ରାୟ ୧୦ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା । ଅବଧାନଙ୍କ ଚାଟଶାଳୀ ଓ ସଂସ୍କୃତ ପଣ୍ଡିତଙ୍କ ଟୋଲ ବା ସଂସ୍କୃତ ପାଠଶାଳା ପ୍ରଚଳିତ ଥିଲା । ଇଂରେଜୀ ପଦ୍ଧତିରେ ରାଜକାର୍ଯ୍ୟ ଚଳାଇବା ପାଇଁ ଯେଉଁ ଶିକ୍ଷାର ଆବଶ୍ୟକ ତାହା ନ ଥିଲା । ଲୋକଙ୍କର ସେ ଦିଗରେ ବିଶେଷ ଚେଷ୍ଟା ତ ନ ଥିଲା, ସରକାରୀ ଉଦ୍ୟମ ମଧ୍ୟ ଅତ୍ୟନ୍ତ କ୍ଷୀଣ ଥିଲା । ଏହା ଫଳରେ ବିଦେଶୀଙ୍କ ପ୍ରଭାବ ଶାସନ ପରିଚାଳନା କେନ୍ଦ୍ର ବା ଅଫିସ୍‌ମାନଙ୍କରେ ବିଶେଷ ଭାବରେ ପରିଲକ୍ଷିତ ହେଉଥିଲା । ବଙ୍ଗ ସହିତ ଓଡ଼ିଶା ଯୋଡ଼ା ହୋଇଥିବାରୁ ସରକାରୀ ହାକିମମାନେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପ୍ରତି ସେତେ ଦୃଷ୍ଟି ଦେଉ ନ ଥିଲେ । ସରକାରଙ୍କ ଓଡ଼ିଶା ପ୍ରତି ଉଦାସୀନ ନୀତିକୁ କେତେକ ଉଚ୍ଚମନା ଇଂରେଜ ହାକିମ ବାରମ୍ବାର ସମାଲୋଚନା କରିବାରୁ ସରକାରଙ୍କ ମତିଗତି ବଦଳିଗଲା¹ ।"

ଊନବିଂଶ ଶତାବ୍ଦୀରେ ଓଡ଼ିଶାର ପ୍ରତି ପ୍ରତି ସରକାରୀ ବିମୁଖତା ଏବଂ ଓଡ଼ିଆ-ଭାଷା ବିଲୋପ ଆନ୍ଦୋଳନ ଓଡ଼ିଆଙ୍କ ପ୍ରାଣରେ ନିଜସ୍ୱ ଦାବି ହାସଲ ପାଇଁ ଜାତୀୟଭାବନା ସୃଷ୍ଟି କରିବା ସ୍ୱାଭାବିକ ! ସେ କାଳର କବିମାନେ ମଧ୍ୟ ସାହିତ୍ୟ ମାଧ୍ୟମରେ ଏହି ପ୍ରକାର ସ୍ୱଦେଶୀ ଭାବନା ସଞ୍ଚାରକରିବା ପାଇଁ ଯତ୍ନ କରିଥିଲେ । ୮ । ୨ । ୧୮୯୫ ଖ୍ରୀଷ୍ଟାବ୍ଦରେ ସମ୍ବଲପୁର ହିତୈଷିଣୀ ପତ୍ରିକାରେ ସୁସାହିତ୍ୟିକ ଜଳନ୍ଧର ଦେବ ଜାତିକୁ ନିବେଦନ କରି ଲେଖିଥିଲେ—

"ଏ କି ଅଦଭୁତ ଶୁଣିଲିରେ ଆଜ
 ମାତୃସମ ମାତୃଭାଷା ଆମ୍ଭର
ସପତ୍ନୀକୁ ନିଜ ଶିଶୁଗଣେ ଦେଇ
 ନିଜେ ଦେଖୁ ଦୁଃଖେ ହେବେ ଅନ୍ତର ।
ନିଜ ଭାଷା ଥିଲେ ତୁମ୍ଭମାନଙ୍କର
 ସର୍ବଦା କାଳରେ ଥିବ ଗୌରବ
ଅନ୍ୟ ଭାଷା ଶିଖି ଯଶ ଲଭିବାକୁ
 ଚଳେ କି ହେ କରୁଅଛ ସମ୍ଭବ ।"

¹ । ଊନବିଂଶ ଶତାବ୍ଦୀର ଓଡ଼ିଶା—୧ମ ଭାଗ—ସୂର୍ଯ୍ୟନାରାୟଣ ଦାସ ୧୯୬୯—ପୃ. ୧୬୭

ସ୍ୱଭାବକବି ଗଙ୍ଗାଧର ଲେଖିଥିଲେ---

"ମାତୃଭୂମି ମାତୃଭାଷାରେ ମମତା ଯା ହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନୀ ଗଣରେ ଗଣିବା ଅଜ୍ଞାନ ରହିବେ କାହିଁ । (ମାତୃଭୂମି)

ବ୍ୟାସକବି ଫକୀରମୋହନ ମଧ୍ୟ ଜାତିର ଏହି ଦୁର୍ଗତି ସମୟରେ ଚେତାବନୀ ଦେଇଥିଲେ, କବିତା ମାଧ୍ୟମରେ—

"ପଢ଼ ରାଜଭାଷା ଅଛୁ ତହିଁ ଲାଭ
ମାନ ନ ହରାଅ ଜାତୀୟ ସ୍ୱଭାବ ।

× × ×

ନ କଲେ ମାତୃଭାଷାର ଉନ୍ନତି
ଘୁଞ୍ଚିବ କି କେବେ ଦେଶର ଦୁର୍ଗତି ।"

ବହୁ କାଳର ପରାଧୀନତା ଏବଂ ରାଜନୈତିକ ଉତ୍ପୀଡ଼ନ ହେତୁ ଭାରତର ଜାତୀୟ ଜୀବନ ବୋଲି କିଛି ଅନୁଭୂତ ହେଉ ନ ଥାଏ । ଇତିହାସ ପୃଷ୍ଠାରେ ଭାରତ ଗୋଟିଏ ପତାକା ତଳେ କେବେ ହେଲେ ଶାସିତ ହୋଇ ନ ଥିଲା । ତେଣୁ ସର୍ବଦା ଆଭ୍ୟନ୍ତରୀଣ କଳହ ଏବଂ ପାରସ୍ପରିକ ସଂଘର୍ଷ ଯୋଗୁଁ ଭାରତୀୟ ଜାତୀୟତା ଗଢ଼ିଉଠିବା କଷ୍ଟକର ବ୍ୟାପାର ଥିଲା । ସୁଖର କଥା ଯେ ଇଂରେଜ ରାଜତ୍ୱ କାଳରେ ସମଗ୍ର ଦେଶ ଗୋଟିଏ ପତାକାତଳେ ଏକାଠି ହୋଇଥିଲା ଏବଂ ସମଗ୍ର ଦେଶରେ ଗୋଟିଏ ପ୍ରକାର ଆଇନ କାର୍ଯ୍ୟକାରୀ ହେବାକୁ ଲାଗିଲା । ରେଲୱେ, ଟେଲିଫୋନ୍ ଏବଂ ଟେଲିଗ୍ରାଫ୍‌ର ପ୍ରଚଳନ ଯୋଗୁଁ ଦେଶବ୍ୟାପୀ ସମ୍ପର୍କ ସ୍ଥାପନରେ ପ୍ରତିବନ୍ଧକ ରହିଲା ନାହିଁ । ଏହି ପରିପ୍ରେକ୍ଷୀରେ ଭାରତୀୟ ଜାତୀୟ ଭାବନାକୁ ପରିପୁଷ୍ଟ କଲା ଜାତୀୟ କଂଗ୍ରେସର ପ୍ରତିଷ୍ଠା । ଭାରତବର୍ଷକୁ 'ବନ୍ଦେ ମାତରଂ' କହି କେବଳ ଜନନୀ ବୋଲି ଆକୁମାରୀହିମାଚଳ ସମସ୍ତେ ସ୍ୱୀକାର କଲେ ନାହିଁ । ତାହାକୁ ବନ୍ଧନମୁକ୍ତ କରିବାକୁ ଶପଥ ଗ୍ରହଣ କରିଥିଲେ । ଓଡ଼ିଆକବି ରାଧାନାଥ ରାୟ "ଭାରତ ଗୀତିକା'ରେ ଲେଖିଥିଲେ—

"ସର୍ବେଷାଂ ନୋ ଜନନୀ ଭାରତ-
ଧରଣୀ କଲ୍ପଲତେୟଂ ।
ଜନନୀ ବତ୍ସଳ ତନୟଗଣୈସ୍ତତ୍-
ସମ୍ୟକ୍ ଶର୍ମ୍ମ ବିଧେୟଂ ।"

ଭାରତଜନନୀଙ୍କୁ ଶ୍ରଦ୍ଧା ଜଣାଇବା ସଙ୍ଗେ ସଙ୍ଗେ ସେହି ଗୀତିକାରେ ନିଜର ଜନ୍ମଭୂମି ଉତ୍କଳକୁ ସ୍ମରଣକରି କବି ଲେଖିଥିଲେ—

"ଭାରତପଙ୍କଜଦଳମିଦମୁତ୍କଳ-
ମଣ୍ଡଳମିତ ବଦତଂ ସନ୍ତୁ ।
ତସ୍ୟକୃତେ ବସୁମତୀ ସମେତା
ବହୁତାପୋତ୍କଳ ସସନ୍ତୁ ।
ଭାରତ ମେତା ଗତରସ୍ମାକଂ
ନାପରମ୍ପି ଭୁବନାମ ।
ସର୍ବାଦୌ ପରମନ୍ତୁ କର୍ମଣି ତନ୍ତୁ
ଭାରତମେବ ନମାମଃ ।'

ଉତ୍କଳ ସମ୍ମିଳନୀରେ ଗାଇବା ପାଇଁ ଏହି ଗୀତଟି ରଚିତ ହୋଇଥିବା ଜଣାଯାଏ । ୧୮୯୫ ଖ୍ରୀଷ୍ଟାବ୍ଦରେ ପୁନା କଂଗ୍ରେସରେ ଗଞ୍ଜାମରୁ ପ୍ରତିନିଧିରୂପେ ସାହିତ୍ୟିକ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସହିତ ଔପନ୍ୟାସିକ ଓ ଐତିହାସିକ ଅପର୍ଣ୍ଣା ପଣ୍ଡା ଯୋଗ ଦେଇଥିଲେ ବୋଲି "କଳାବତୀ" (୧୯୦୨) ଉପନ୍ୟାସରେ ସେ ଉଲ୍ଲେଖ କରିଛନ୍ତି । ୧୮୯୮ ଖ୍ରୀଷ୍ଟାବ୍ଦରେ ନେସନାଲ ସୋସାଇଟି ତରଫରୁ ଫକୀରମୋହନ, ଗୌରୀଶଙ୍କର, ରାମଶଙ୍କର, ମି. ଦାସ, ଶ୍ୟାମସୁନ୍ଦର ରାଜଗୁରୁ ପ୍ରଭୃତି ଯୋଗଦାନ କରିଥିଲେ । ମୋଟ ଉପରେ ୧୯୦୨ରେ ଗଞ୍ଜାମ ସମ୍ମିଳନୀ ଆହୂତ ହୋଇ ତା ପରବର୍ତ୍ତି ତାହା ଉତ୍କଳ ସମ୍ମିଳନୀରେ ପରିଣତ ହେଲା । ଏହି ସମ୍ମିଳନୀରେ ମି. ମଧୁସୂଦନ ଦାସଙ୍କ ସହିତ ଉତ୍କଳମଣି ଗୋପବନ୍ଧୁ ଏବଂ ସମଗ୍ର ପ୍ରାକୃତିକ ଉତ୍କଳର ବହୁ ଗଣ୍ୟମାନ୍ୟ ଲୋକ ଉତ୍କଳୀୟ ସମସ୍ୟାର ସମାଧାନ ପାଇଁ ଏକାଠି ହେଲେ । ଏହି ସମ୍ମିଳନୀ ମଞ୍ଚରୁ ମଧୁସୂଦନ ଦାସଙ୍କର ଉଦାତ୍ତବାଣୀ ଶୁଣିବାକୁ ମିଳିଲା—

"ନିଜର ଜୀବନ ଜାତିକୁ ଅର୍ପଣ
କଲେ ମିଳେ ଜାତି ପ୍ରାଣ,
ଜାତୀୟ ଜୀବନ ନ ମିଳିବ କଲେ
ହାଟେ ବାଟେ ଅନ୍ୱେଷଣ ।"

ଗୋପବନ୍ଧୁ ଦାସ ତରୁଣ ବୟସରୁ କଂଗ୍ରେସ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ଏବଂ ଭାରତୀୟ ଜାତୀୟ ଜୀବନ ତାହାଙ୍କୁ ବହୁ ପରିମାଣରେ ଆଲୋଡ଼ିତ କରିଥିଲା । ଏହା ଥିଲା ସେ କାଳରେ ଏକ ଅଭିନବ ଚିନ୍ତା । ବହୁ କାଳର ପରାଧୀନତାର ଗ୍ଲାନି ଓ ସୁଷୁପ୍ତି ମଧ୍ୟରେ ଭାରତୀୟ ଜାତୀୟତା ଭାବନା ଅହେତୁକ ଭାବରେ ପୁଳକ ଓ ଉତ୍ତେଜନା ସୃଷ୍ଟି କରୁଥିଲା । ତେଣୁ ଏହି ତରୁଣ ବୟସରେ ୧୮୯୯ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ 'ଅବକାଶଚିନ୍ତା' ପୁସ୍ତକରେ ଗୋପବନ୍ଧୁ ଲେଖିଥିଲେ—

"ଦିଅ ସ୍ୱାର୍ଥ ବଳି ଦେଖାଅ ସେ ତ୍ୟାଗ
ଭାରତ ଜାଗିବ ମହାଯାଗେ ଜାଗ ।
× × ×
ନିଜ ସୁଖ ଲାଗି ଜାତି ଲୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।
ଦେଖାଅ ଏ ସତ୍ୟ ଆପଣା ପରାଣେ
ଦିଅ ଏହି ମନ୍ତ୍ର ସର୍ବବର୍ଣ୍ଣିକାନେ ।
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ବିଶ୍ୱହିତେ ତେଜ ଅଭିମାନ ।"

ପ୍ରକୃତ ପକ୍ଷେ ସ୍ୱଦେଶୀ ଆନ୍ଦୋଳନ ସମଗ୍ର ଦେଶରେ ଲୋକପ୍ରିୟ ହୋଇଉଠିଲା ୧୯୦୫ ଖ୍ରୀଷ୍ଟାବ୍ଦରୁ । ଲର୍ଡ କର୍ଜନଙ୍କ ବଙ୍ଗ ବିଭାଜନ ନୀତି ପ୍ରବଳ ପ୍ରତିକ୍ରିୟା ସୃଷ୍ଟି କଲା । ବିଦେଶୀ ଜିନିଷ ବର୍ଜନ କରିବା ଥିଲା ଏହି ଆନ୍ଦୋଳନର ଅନ୍ୟତମ ମୁଖ୍ୟ ନୀତି । ଓଡ଼ିଶା ବଙ୍ଗ ସହିତ ମିଶି କରି ରହିଥିବାରୁ ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନ ଓଡ଼ିଶାକୁ ମଧ୍ୟ ଗଭୀର ଭାବରେ ପ୍ରଭାବିତ କରିଥିବା ଜଣାଯାଏ । ଏହି ସମ୍ପର୍କରେ Dr. Purushattam Kar ତାଙ୍କ "Orissa during the Swadeshi Movement and After (1905-1920)" ପ୍ରବନ୍ଧରେ ଆଲୋଚନା ପ୍ରସଙ୍ଗରେ କହିଥିଲେ - In response to the partition agitation, a big public meeting was held in Cuttack on 20, August 1905 under the presidency of Janakinath Bose. Its aim was to propagate and popularise the Swadeshi ideas. The crowd was so great that it was impossible to accommodate them all. Dhirendranath Choudhury, Headmaster, Cuttack Town High School and Biswanath Kar explained to the people the significance of boycott aud Swadeshi. A signature-campaign was started and the list containing the names of those who took a pledge to use only Swadeshi goods was read out. At last Madhusudan Das, in a fiery speech said, "A Promise is of little importance unless it is put into practice."[୩]

ମଧୁସୂଦନ ଦାସ ଥିଲେ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା । ସ୍ୱଦେଶୀ ଆନ୍ଦୋଳନର ବହୁ ପୂର୍ବରୁ ସେ ଓଡ଼ିଶାର ତାରକସୀ ଶିଳ୍ପର ପ୍ରତିଷ୍ଠା କରି ସାରିଥିଲେ । ସେ ସ୍ୱଦେଶୀ

ଦ୍ରବ୍ୟର ଉତ୍ପାଦନ ଓ ବ୍ୟବହାର ପାଇଁ ସର୍ବଦା ପ୍ରେରଣା ଦେଇ ଆସୁଥିଲେ । ତାଙ୍କର ପ୍ରଚାର ଯୋଗୁଁ ଓଡ଼ିଶାରେ ଏକ ନବଜାଗରଣ ସୃଷ୍ଟି ହୋଇଥିଲା । ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶଙ୍କ ପରି ବହୁ ଜାତୀୟତାବାଦୀ ତରୁଣ ମଧୁସୂଦନଙ୍କ ଆହ୍ୱାନରେ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର କରିବେ ବୋଲି ଶପଥପତ୍ରରେ ପ୍ରଥମେ ଦସ୍ତଖତ କରିଥିଲେ । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସ୍ୱଦେଶୀ ଆନ୍ଦୋଳନ ଖୁବ୍ ପ୍ରଖର ହୋଇ ଉଠିଲା । ପ୍ରତ୍ୟେକ ଅଞ୍ଚଳରେ ସଭାମାନଙ୍କରେ ଦେଶ-ଜାତ ଦ୍ରବ୍ୟକୁ ବ୍ୟବହାର କରିବାପାଇଁ ଆହ୍ୱାନ ଦିଆଯାଉଥିଲା । ଏହି ଉଦ୍ଦେଶ୍ୟରେ ବାରବାଟୀ ସ୍କୁଲରେ ଔପନ୍ୟାସିକ ଫକୀରମୋହନ ସେନାପତିଙ୍କ ସଭାପତିତ୍ୱରେ ଏକ ସଭା ଆହୂତ ହୋଇ ସ୍ଥିର କରାଗଲା ଯେ କେହି ବିଦେଶୀ ଦ୍ରବ୍ୟ ବ୍ୟବହାର କରିବେ ନାହିଁ । ଇଂରେଜ ଶାସକଗଣ ତାଙ୍କର ଅର୍ଥନୈତିକ ସ୍ୱାର୍ଥ ହାସଲ ପାଇଁ ଆମର ସ୍ୱଦେଶୀ ବସ୍ତ୍ରଶିଳ୍ପର ପ୍ରସାର ବନ୍ଦ କରି ତାଙ୍କ ଦେଶର ମାଞ୍ଚେଷ୍ଟର ଲୁଗାର ପ୍ରଚଳନ କରାଇଲେ । ସେ ଦେଶର ଚେସ୍‌ସାୟାର ଲୁଣ ଏ ଦେଶରେ ବିକ୍ରୀ କରାଗଲା । ଅଥଚ ଆମର ବାଲିଚର ସମୁଦ୍ରରୁ ଲୁଣ ମାରିବା ପାଇଁ ଅଧିକାର ରହିଲା ନାହିଁ । ଦେଶର ଏହି ଅବକ୍ଷୟ ଅବସ୍ଥାକୁ ଲକ୍ଷ୍ୟ କରି କବି ଫକୀରମୋହନ ଲେଖିଥିଲେ—

"ଓଳିତଳେ ଲୁଣ କୋଟିଏ ମହଣ
ଥାଉଁ ମୋହର କଥା ଶୁଣ,
ବୋଇଲେ କି ହେବ ଖାଇବାକୁ ହେବ
ଲିଭରପୁରର ଲୁଣ ।
ମାଞ୍ଚେଷ୍ଟର ତନ୍ତ୍ରୀ ଲୁଗା ବୁଣୁଛନ୍ତି
ତୁମ୍ଭମାନଙ୍କ ପକାଶେ,
ବୁଝ ତନ୍ତ୍ରୀବଂଶ ହେଉ ସର୍ବନାଶ
ଯାଆନ୍ତୁ ସେ ବନବାସେ ।
ସ୍ୱଦେଶର ଶିଳ୍ପ ସବୁ ଅଳ୍ପ ଅଳ୍ପ
ଦେଖୁଛ ଯାଉଛି ବୁଡ଼ି,
ଦେଖୁନାହଁ ଭଲ ସରୁଛି ସଙ୍ଖାଳ
ଶୋଇଛ ମାଠଟି ଘୋଡ଼ି ।" (ଜନ୍ମଭୂମି)

ଜାଳକାଳର ପରାଧୀନତା ଏବଂ ବିଦେଶୀମାନଙ୍କର ଶୋଷଣ ଓ ଉତ୍ପୀଡ଼ନ ଯୋଗୁ ଦେଶର ଜନଜୀବନରେ ଏକ ଉଦାସଭାବ ରାଜତ୍ୱ କରୁଥିଲା । ଦିନେ ଏହି ଦେଶ ଶିଳ୍ପ, ସ୍ଥାପତ୍ୟ, ସାମରିକ ନୈପୁଣ୍ୟ, ସାହିତ୍ୟ ଓ ସଙ୍ଗୀତ ପ୍ରଭୃତି ବିଭାଗରେ ଅତ୍ୟନ୍ତ ଦକ୍ଷ ଓ ସମୃଦ୍ଧ ବୋଲି ପ୍ରମାଣ ରହିଥିଲେ ହେଁ ବିଦେଶୀ ଶୋଷଣ ଯୋଗୁଁ ଜାତୀୟଜୀବନ ଥିଲା ଅତ୍ୟନ୍ତ ପୀଡ଼ିତ ଏବଂ ମୋହଗ୍ରସ୍ତ । ଏହି ଅବସ୍ଥାର ବିରୋଧ କରି ଫକୀରମୋହନ ସ୍ମରଣ-କରାଇ ଦେଇଥିଲେ—

"ହେ ଉତ୍କଳ ଭେଣ୍ଡା ତୁମ୍ଭେ ତ ହେ ମେଣ୍ଢା
ହୋଇ ଶାର୍ଦ୍ଦୂଳ ସନ୍ତାନ
ଅଧମ ବେଶରେ ଅନ୍ୟ ଜାତିଠାରେ
ହେଉଅଛ ହୀନମାନ ।" (ଲୁଗ ଲୁଗ)

ସୁନାମଧନ୍ୟ ସ୍ୱଦେଶୀ ଆନ୍ଦୋଳନର ନେତା ସି. ଆଇ. ଚିନ୍ତାମଣି ୧୯୦୭ ସାଲ ଅଗଷ୍ଟ ଏଗାର ତାରିଖ ଦିନ କଟକରେ ଉପସ୍ଥିତ ରହି ସ୍ୱଦେଶୀ ଆନ୍ଦୋଳନ ଉଦ୍ଦେଶ୍ୟରେ ଭାଷଣ ଦେଇଥିଲେ । ସେହିପରି ୧୯୦୭ ସାଲ ଏପ୍ରିଲ୍ ମାସରେ ସର୍ବମାନ୍ୟ ଭାରତୀୟ ନେତା ବିପିନ୍ ଚନ୍ଦ୍ର ପାଲ୍ ମଧ୍ୟ କଟକର ମ୍ୟୁନିସିପାଲିଟି ହତା ମଧ୍ୟରେ ସଭା କରି ଜାତୀୟ ଶିକ୍ଷା ଓ ସ୍ୱଦେଶୀ ଆନ୍ଦୋଳନ ସମ୍ପର୍କରେ ଉଦ୍‌ବୋଧନ କରିଥିଲେ । ଏହି ଦୁଇ ନେତାଙ୍କର ଆବିର୍ଭାବ ଯୋଗୁଁ ସ୍ୱଦେଶୀ ଆନ୍ଦୋଳନ ଓଡ଼ିଶାର ବହୁ ଅଞ୍ଚଳରେ ତୀବ୍ରତର ହୋଇଉଠିଲା । ପ୍ରତ୍ୟେକ ବର୍ଷ ଓଡ଼ିଶାର ନେତାମାନେ ନିଖିଳ ଭାରତ କଂଗ୍ରେସ ଅଧିବେଶନର ପ୍ରତିନିଧି ହୋଇ ଆଲୋଚନାରେ ଅଂଶଗ୍ରହଣ କରୁଥିଲେ । ୧୯୧୬ ସାଲ ପର୍ଯ୍ୟନ୍ତ ମଧୁସୂଦନ ଦାସ ନିଖିଳ ଭାରତ କଂଗ୍ରେସର ଜଣେ ସର୍ବମାନ୍ୟ ନେତା ଥିଲେ ଏବଂ ସ୍ୱଦେଶୀ ଆନ୍ଦୋଳନର ଥିଲେ ଅନ୍ୟତମ ମୁଖ୍ୟ ପ୍ରବକ୍ତା । ମାତ୍ର ନାନା କାରଣରୁ ସେ କଂଗ୍ରେସରୁ ଅଲଗା ରହି କେବଳ ଉତ୍କଳ ସମ୍ମିଳନୀ ପାଇଁ କାର୍ଯ୍ୟ କରିବାକୁ ନିଷ୍ପତ୍ତି କଲେ । ମଧୁବାବୁଙ୍କ ପରେ ଉତ୍କଳମଣି ଗୋପବନ୍ଧୁ ହେଲେ ଓଡ଼ିଶା କଂଗ୍ରେସର କର୍ଣ୍ଣଧାର । ତାଙ୍କର ନେତୃତ୍ୱରେ ୧୯୨୦ ସାଲରେ ଚକ୍ରଧରପୁରଠାରେ ଅନୁଷ୍ଠିତ ଅଧିବେଶନରେ ଉତ୍କଳ ସମ୍ମିଳନୀ କଂଗ୍ରେସର ନୀତି ଓ ଆଦର୍ଶକୁ ଗ୍ରହଣ କରିଗଲେ ଏବଂ ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ନୀତିକୁ ଅନୁସରଣ କରିବାପାଇଁ ପ୍ରସ୍ତାବ ଗ୍ରହଣକଲେ । ଏତିକିବେଳେ କବି କୃଷ୍ଣମୋହନଙ୍କର ଜାତୀୟ ସଙ୍ଗୀତ ଓଡ଼ିଶାବାସୀଙ୍କ ପ୍ରାଣରେ ଅପୂର୍ବ ପୁଲକ ସଞ୍ଚାର କରିଥିଲା । 'ବନ୍ଦେ ମାତରଂ' ଆନ୍ଦୋଳନକୁ ଲକ୍ଷ୍ୟ କରି ସେ ଗାଇଥିଲେ—

"ଗମ୍ଭୀର ଆନନ୍ଦେ ବିମୋହନ ଛନ୍ଦେ
ଗାଅ ଆଜି ବନ୍ଦେ ମାତରଂ,
ଉତ୍କଳ ଦୁଆରେ ନୀଳାଚଳାଙ୍ଗନେ
ନହବତ ଆଜି ବାଜୁଛି ସଘନେ
ଜାଣିବେ ଜନନୀ ପାହିଛି ରଜନୀ
ବୋଲ୍ ସର୍ବେ ବନ୍ଦେ ମାତରଂ ।"

× × ×

"ଆଜି ଏକତାନେ ବୋଲ ଭାଇମାନେ
ବନ୍ଦେ ଶ୍ରୀ ଭାରତଜନନୀମ୍,
ଭୁଲି ଜାତିଭେଦ ଭୁଲି ନିଜ ପଦ
ବୋଲ ବୋଲ୍ ବନ୍ଦେ ଜନନୀମ୍ ।"

# ଭାରତର ରାଜନୀତିକ ମଞ୍ଚଉପରେ ମହାତ୍ମା ଗାନ୍ଧୀ
# ଓ
# ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନ

ମୋହନଦାସ କରମଚାନ୍ଦ୍ ଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ଆସି ଭାରତରେ ପଦାର୍ପଣ-କଲେ । ସେ ପର୍ଯ୍ୟନ୍ତ ଭାରତର ଜାତୀୟ କଂଗ୍ରେସରେ ତାଙ୍କର କୌଣସି ଭୂମିକା ନ ଥିଲା । ଏ ଦେଶର ଜନତାଙ୍କ ନିକଟରେ ମଧ୍ୟ ସେ ପରିଚିତ ନ ଥିଲେ । କିନ୍ତୁ ଦକ୍ଷିଣ ଆଫ୍ରିକାରେ ଗାନ୍ଧିଜୀ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ସଂଗ୍ରାମ କରୁଥିଲାବେଳେ ତାହା ଏଦେଶର ବୁଦ୍ଧିଜୀବୀ-ମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେ ଋଷିସୁଲଭ ଅତ୍ୟନ୍ତ ସରଳ ଜୀବନଯାପନ କରୁଥିଲେ ଏବଂ ଦରିଦ୍ର ଜନସାଧାରଣଙ୍କ ସହିତ ମିଳିମିଶି ସେମାନଙ୍କର ଦାବି ହାସଲ କରିବା ପାଇଁ ଯେଉଁ ଲଢ଼େଇ କରୁଥିଲେ, ସେ ତାର ନାମ ଦେଇଥିଲେ 'ସତ୍ୟାଗ୍ରହ' । ସତ୍ୟାଗ୍ରହର ମୌଳିକ ଭିତ୍ତି ହେଲା 'ସତ୍ୟ ଏବଂ ଅହିଂସା ମାଧ୍ୟମରେ ଅନ୍ୟାୟ ବିରୁଦ୍ଧରେ ଅତୁଟ ସଂଗ୍ରାମ' । ସେ ଇଚ୍ଛା କରୁଥିଲେ ତ୍ୟାଗ, ସହନଶୀଳତା ଓ ପ୍ରେମ ଜରିଆରେ ଶତ୍ରୁର ହୃଦୟ ଜୟକରିବା ପାଇଁ ।

ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହ କରି ଗାନ୍ଧିଜୀ ସଫଳତା ହାସଲ କରିଥିଲେ । ଭାରତରେ ଆସି ସେ ଅନୁଭବ କଲେ ସତ୍ୟାଗ୍ରହ ଜରିଆରେ ଭାରତୀୟ ସମସ୍ୟାର ସମାଧାନ କରିହେବ । ସେ ପ୍ରଥମେ ଚମ୍ପାରଣ କୃଷକମାନଙ୍କର ନେତୃତ୍ୱ ଗ୍ରହଣକଲେ । ସେମାନେ ଯୁଗଯୁଗର ଅନ୍ଧକାର ମଧ୍ୟରୁ ମୁକ୍ତ ହେଲେ ଏବଂ ଜାଗ୍ରତ ହେଲେ । ଗାନ୍ଧିଜୀ ଗୁଜରାଟର କଇରା ଜିଲ୍ଲାରେ କୃଷୀମାନଙ୍କର ଏବଂ ଅହମ୍ମଦାବାଦରେ କାରଖାନା ଶ୍ରମିକ-ମାନଙ୍କର ନେତୃତ୍ୱ ଗ୍ରହଣକଲେ । ସତ୍ୟାଗ୍ରହ ଜରିଆରେ ଦାବି ହାସଲ କରି ଗାନ୍ଧିଜୀ ଜନସାଧାରଣଙ୍କର ଅତ୍ୟନ୍ତ ଆପଣାର ହୋଇ ଉଠିଲେ । ଗାନ୍ଧିଜୀଙ୍କ ଆଗମନ ପୂର୍ବରୁ କୌଣସି ଭାରତୀୟ ନେତା ଜନସାଧାରଣଙ୍କର ନିକଟବର୍ତ୍ତୀ ହୋଇପାରି ନ ଥିଲେ । ମଧ୍ୟବିତ୍ତ ବୁଦ୍ଧିଜୀବୀଗୋଷ୍ଠୀ ମଧ୍ୟରେ ସେମାନଙ୍କର ଆନ୍ଦୋଳନ ସୀମିତ ରହିଥିଲା । ପ୍ରଥମକରି ଗାନ୍ଧିଜୀଙ୍କ ଆହ୍ୱାନରେ ଜନସାଧାରଣ ସତ୍ୟାଗ୍ରହ ଆନ୍ଦୋଳନ ସହିତ ସାମିଲ ହୋଇଗଲେ ।

ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ୱଦେଶୀ ଆନ୍ଦୋଳନ ଅତ୍ୟନ୍ତ ପ୍ରଭାବଶାଳୀ ହୋଇ-ଉଠିଲା । ଦେଶର କୋଣେ କୋଣେ ସ୍ୱଦେଶୀ ବାର୍ତ୍ତା ପ୍ରଚାରିତ ହେଲା । ଗାନ୍ଧିଜୀଙ୍କର ସବୁଠାରୁ ପ୍ରିୟ ତିନୋଟି କାର୍ଯ୍ୟ ହେଲା—ହିନ୍ଦୁମୁସଲମାନ ଏକତା ସ୍ଥାପନ, ଅସ୍ପୃଶ୍ୟତା ନିବାରଣ ଏବଂ ନାରୀ ଜାତିର ମର୍ଯ୍ୟାଦା ବୃଦ୍ଧି । ଅସ୍ପୃଶ୍ୟମାନଙ୍କୁ ସେ ନାମ ଦେଲେ

'ହରିଜନ' । ସେ ଅରେ ତାଙ୍କର କଳ୍ପିତ ଭାରତ ସମ୍ବନ୍ଧରେ ଲେଖିଥିଲେ—"ମୁଁ ଏପରି ଗୋଟିଏ ଭାରତବର୍ଷ ଗଠନ କରିବା ପାଇଁ କାମ କରିବି, ଯେଉଁଠାରେ ଦରିଦ୍ରତମ ବ୍ୟକ୍ତି ମଧ୍ୟ ଭାବିବ ଯେ, ସେ ମଧ୍ୟ ଦେଶର ଜଣେ ମାଲିକ ଏବଂ ଦେଶଗଠନରେ ତା'ର ମତାମତର ମୂଲ୍ୟ ରହିଛି । ଯେଉଁଠାରେ ଉଚ୍ଚନୀଚ ଶ୍ରେଣୀର ଭେଦ ରହିବ ନାହିଁ, ସବୁ ସମ୍ପ୍ରଦାୟର ଲୋକେ ନିର୍ବିରୋଧରେ ବାସ କରିବେ । ସେ ଭାରତରେ ଅସ୍ପୃଶ୍ୟତା ପରି ଅଭିଶାପର ସ୍ଥାନ ରହିବ ନାହିଁ । ନାରୀ ପାଇବ ପୁରୁଷ ସହିତ ସମାନ ଅଧିକାର । ଏହାହିଁ ହେଉଛି ମୋର କଳ୍ପିତ ଭାରତ ।"[୪]

ଗାନ୍ଧିଜୀ ଅନୁଭବକଲେ ଯେ ସେ ପ୍ରଥମେ ଏହି ବିଶାଳ ଦେଶର କୋଣେ କୋଣେ ପରିଭ୍ରମଣ କରି ଅବସ୍ଥା ଅନୁଧ୍ୟାନ କରିବେ ଏବଂ ଜନସାଧାରଣଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସିବେ । ପୃଥିବୀର ଦଳିତ ଓ ଦରିଦ୍ର ଜନସାଧାରଣ କିପରି ଦାରିଦ୍ର୍ୟ ଏବଂ କୁସଂସ୍କାରରୁ ମୁକ୍ତିଲାଭ କରିବେ, ସେ ସେହି ଚିନ୍ତାରେ ମଗ୍ନ ରହୁଥିଲେ । ୧୯୨୦ ସାଲରେ ପୁରୀ ଜିଲ୍ଲାରେ ଭୟାବହ ଦୁର୍ଭିକ୍ଷ ପଡ଼ିଥାଏ । ସମ୍ବାଦପତ୍ରରୁ ପାଠ କରି ଗାନ୍ଧିଜୀ ଓଡ଼ିଶାର ଦରିଦ୍ର ଜନସାଧାରଣଙ୍କ ପ୍ରତି ଆକୃଷ୍ଟ ହେଲେ । ଲୋକମାନଙ୍କ ଦୁଃଖ ଦୁର୍ବିପାକ ଶ୍ରବଣ କରି ଗାନ୍ଧିଜୀଙ୍କ ହୃଦୟ ବିଚଳିତ ହେଲା । ସେ ଇଚ୍ଛା କଲେ ସ୍ୱଚକ୍ଷୁରେ ଏହି ଦୁଃଖୀ ଲୋକମାନଙ୍କୁ ଦେଖିବା ପାଇଁ ।

## ଓଡ଼ିଶାରେ ଗାନ୍ଧିଜୀ

ଗାନ୍ଧିଜୀ ପ୍ରଥମକରି ୧୯୨୧ ସାଲରେ ଓଡ଼ିଶା ଭ୍ରମଣରେ ଆସିଲେ । ମାର୍ଚ୍ଚ ମାସ ୨୧ ତାରିଖ ଦିନ ଗାନ୍ଧିଜୀ କଟକରେ ପଦାର୍ପଣ କରିବା ଦିନ ହଜାର ହଜାର ଜନତା ତାଙ୍କୁ ଉଚ୍ଛ୍ୱସିତ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ । ସେ ଦିନ ଥିଲା ପବିତ୍ର ଦୋଳପୂର୍ଣ୍ଣିମା । କାଠଯୋଡ଼ି ନଦୀଶଯ୍ୟାରେ ଗାନ୍ଧିଜୀ ହଜାର ହଜାର ଲୋକଙ୍କୁ ଭାଷଣ ଦେଇଥିଲେ । ତାଙ୍କ ପଦଯାତ୍ରା ଓଡ଼ିଶାରେ ଏକ ଅଭୂତପୂର୍ବ ଜନଜାଗରଣ ସୃଷ୍ଟି କରିଥିଲା । ଗାନ୍ଧିଜୀଙ୍କୁ ସ୍ୱାଗତ କରାଇ ଉତ୍କଳମଣି ଗୋପବନ୍ଧୁ ସେହିଦିନ କହିଥିଲେ—"All the great religious preachers of India have set foot on the sacred soil of Orissa. Great men from Buddha upto Kabir, Ramanuja, Shankar, Nanak, Chaitanya and others who have lived in India have their symbols in Orissa. About three hundred years ago on this very day of Holi, Chaitanya Dev had preached the doctrine of love on these sands. Today three

---

୪ । ଭାରତର ସ୍ୱାଧୀନତା ସଂଗ୍ରାମ—NBT—New Delhi—ପୃ ୧୬୪

hundred years after on that very day another great man is here to preach the doctrine of political love. There is no place for diplomacy in politics of the Mohatma. Orissa is famous for her catholicity. People of different religions, castes and Communities live in peace in this province. There is no difference of castes in Puri. On this auspicious occasion of Mahatmaji's arrival in Orissa, I appeal to you to imbibe the message of Gandhiji in full recollection of the ancient glories and catholicity of the Oriya people "(୫)

୧୯୨୫ ସାଲ ଅଗଷ୍ଟ ୧୯ ତାରିଖରେ ଗାନ୍ଧିଜୀ ଦ୍ୱିତୀୟଥର ପାଇଁ ଓଡ଼ିଶା ଭ୍ରମଣରେ ଆସିଥିଲେ । ଏହିଥର ସେ ମଧୁସୂଦନ ଦାସଙ୍କର ଅତିଥି ହୋଇ ଉତ୍କଳ ଟାନେରୀ ପରିଦର୍ଶନ କରିଥିଲେ । ଭାରତରେ ଉତ୍କଳ ଦରିଦ୍ରତମ ପ୍ରଦେଶ ବୋଲି ଗାନ୍ଧିଜୀ ଉପଲବ୍ଧି କରିପାରିଥିଲେ—ଯଦି ଓଡ଼ିଶାର ଜନସାଧାରଣ ଘରେ ଘରେ ଚରଖା ଚଲାଇବେ, ତେବେ ଓଡ଼ିଶାର ଦାରିଦ୍ର୍ୟ ଦୂରୀଭୂତ ହୋଇପାରିବ ବୋଲି ସେ ମତ ଦେଇଥିଲେ ।

ଖଦୀ ପ୍ରଚାର ପାଇଁ ଗାନ୍ଧିଜୀ ଓଡ଼ିଶା ଆସିଥିଲେ ୧୯୨୭ ସାଲ ଡିସେମ୍ବର ମାସରେ । ଏଥର ସେ ଦକ୍ଷିଣ ଓଡ଼ିଶାର ବହୁ ଅଞ୍ଚଳ ପରିଭ୍ରମଣ କରି ନିଜର ବାର୍ତ୍ତା ପ୍ରଚାର କରିଥିଲେ । ୧୯୨୮ ସାଲରେ କଲିକତା କଂଗ୍ରେସରେ ଯୋଗଦେବା ବାଟରେ ଗାନ୍ଧିଜୀ ସମ୍ବଲପୁର ଆସି ବୁଲିଯାଇଥିଲେ । ମାତ୍ର ତାଙ୍କରଐତିହାସିକ ଓଡ଼ିଶା ଭ୍ରମଣ ଥିଲା ୧୯୩୪ ସାଲରେ । ଗାନ୍ଧିଜୀ ହିନ୍ଦୁ ସମାଜରେ 'ଛୁଆଁ-ଅଛୁଆଁ' ଚଳଣି ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ହରିଜନମାନଙ୍କର ଉନ୍ନତି ପାଇଁ ସେ ଦେଶବ୍ୟାପୀ ଆନ୍ଦୋଳନ ଆରମ୍ଭକଲେ । ତାଙ୍କର ଐତିହାସିକ ହରିଜନ ପଦଯାତ୍ରା ଓଡ଼ିଶାର ପବିତ୍ର ପୀଠ ପୁରୀଠାରୁ ଆରମ୍ଭ ହୋଇଥିଲା । ସନାତନୀ ହିନ୍ଦୁ ନେତାମାନେ ବହୁ ଯୁକ୍ତି କଲେ ହେଁ ମହାତ୍ମା ଗାନ୍ଧି ହରିଜନମାନଙ୍କୁ ଆପଣାର କରିବା ପାଇଁ ସେମାନଙ୍କୁ ମନପ୍ରାଣ ଦେଇ ବୁଝାଇଥିଲେ । ସେ ସମସ୍ତଙ୍କୁ ପ୍ରେମ କରିବା ପାଇଁ କହୁଥିଲେ । ଅନ୍ୟକୁ ଘୃଣା କରି ଅଛୁଆଁ କରି ରଖିଲେ ହିନ୍ଦୁ ସମାଜ ଦୁର୍ବଳ ହୋଇଯିବ । ଗାନ୍ଧିଜୀ ଲେଖିଥିଲେ— "Where there is love, there is life; hatred leads to destruction. " (୬)

---

୫ । ORISSA REVIEW—August 1989-P.90

୬ । Young India—May, 5-1920

ଗାନ୍ଧିଜୀ ଏକ ଉନ୍ନତ ଓ ସମୃଦ୍ଧ ଭାରତୀୟ ସମାଜର ସ୍ୱପ୍ନ ଦେଖୁଥିଲେ, ଯେଉଁଠାରେ ଅଶିକ୍ଷିତ ଦରିଦ୍ର ଜନସାଧାରଣ ମଧ୍ୟ ଦେଶଗଠନରେ ନିଜର ଭୂମିକା ରହିଛି ବୋଲି ଅନୁଭବ କରିପାରୁଥିବେ ସେହି ଭାରତବର୍ଷରେ ଉଚ୍ଚ ଜାତି ଓ ନୀଚ ଜାତି ବୋଲି କୌଣସି ଭେଦଭାବ ରହିବ ନାହିଁ । ପ୍ରତ୍ୟେକ ଜାତି ଓ ଗୋଷ୍ଠି ପରସ୍ପର ସହିତ ମିଳିମିଶି ଚଳିବେ । କୌଣସିଠାରେ ଅଛୁଆଁ ଭାବନା ରହିବ ନାହିଁ । ନାରୀମାନେ ପୁରୁଷମାନଙ୍କ ପରି ସମାନ ସୁଯୋଗ ଓ ଅଧିକାର ଭୋଗ କରିବେ । ଗାନ୍ଧିଜୀଙ୍କ ଓଡ଼ିଶା ରହଣିର ଅନୁଭୂତି ବର୍ଣ୍ଣନା କରି ଉତ୍କଳମଣି ଗୋପବନ୍ଧୁ ଲେଖିଥିଲେ—

"ପଡ଼େ ମନେ ମୋର ଯେବେ ସିନ୍ଧୁକୂଳେ
ନୀଳାଚଳେ ଗାନ୍ଧୀ ଥିଲେ ପଲ୍ଲୀ ଗୁଲେ ।
ଦେଖି ଉତ୍କଳର ଦୁର୍ଭିକ୍ଷ ଆଭାସ
ପାଇଥିଲେ ହୃଦେ ଗୁରୁତର ତ୍ରାସ ।
କେତେ ନର-ନାରୀ-ବୃଦ୍ଧ-ଯୁବା-ବାଳ,
ଅନାହାରେ ଯେହ୍ନେ କେବଳ କଙ୍କାଳ,
ଦେଖିଣ ମହାତ୍ମା କାତର ଅନ୍ତରେ
କହିଥିଲେ ମତେ ଦୁଃଖେ ଏକାନ୍ତରେ—
ଦେଖି ଏ ଦାରୁଣ ଦୃଶ୍ୟ ହୁଏ ମନ,
ଅନଶନେ ଆଜ ତେଜନ୍ତି ଜୀବନ ।
ବଞ୍ଚିବାରୁ ବଳି ଦେଖି ଏ କଷଣ
ଶତଗୁଣେ ଶ୍ରେୟ ମଣେ ମୁଁ ମରଣ ।
ମାତ୍ର ମୋ ପରାଣେ ରହିଛି ଭରସା,
ଅଚିରେ ଦେଶର ଘୁଞ୍ଚିବ ଏ ଦଶା ।"

(ବନ୍ଦୀର ଆତ୍ମକଥା)

ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ସମଗ୍ର ଭାରତବର୍ଷରେ ଏକ ଅଭୁତପୂର୍ବ ଆଲୋଡ଼ନ ସୃଷ୍ଟି କଲା । ଇଂରେଜ ରାଜତ୍ୱକାଳରେ ଜନସାଧାରଣ ଏକପ୍ରକାର ଅସ୍ୱସ୍ଥିତ ହୋଇପଡ଼ିଥିଲେ । ସରକାରଙ୍କ ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ କାହାରି ସାହସ ନ ଥିଲା । ସମଗ୍ର ଜାତି ଭୀତତ୍ରସ୍ତ ଭାବରେ ନିର୍ବେଦ ଜୀବନଯାପନ କରୁଥିଲା । ଗାନ୍ଧିଜୀଙ୍କ ବାଣୀ ଏହି କଙ୍କାଳସାର ଜାତି ପ୍ରାଣରେ ଆଣିଦେଲା ଏକ ଅଲୌକିକ ଉନ୍ମାଦନା । ଗାନ୍ଧିଜୀ ବଜ୍ରଗମ୍ଭୀର ସ୍ୱରରେ ଘୋଷଣା କଲେ—ଇଂରେଜ ଶାସନ ବ୍ୟବସ୍ଥା ସହିତ ଅସହଯୋଗ କରିବାକୁ ହେବ । ଲୋକଙ୍କର ହୀନମନ୍ୟତା, ପରାଧୀନତା ଓ ଦାରିଦ୍ର୍ୟର ସୁଯୋଗ ନେଇ ଇଂରେଜମାନେ ପ୍ରଚାର କରୁଥିଲେ ଯେ

ସେମାନେ ଏକ ଶ୍ରେଷ୍ଠ ଜାତି । କଳା ଭାରତୀୟଗଣ କୌଣସି ପ୍ରକାରେ ସେମାନଙ୍କର ସମକକ୍ଷ ହୋଇପାରିବେ ନାହିଁ । ଗାନ୍ଧିଜୀଙ୍କ ଉଦାରବାଣୀ ଭାରତୀୟଙ୍କ ମନରୁ ଏହି ହୀନମନ୍ୟତା ଦୂରୀଭୂତ କଲା । ବରଂ ଏହା ଏକ ଅତିରଞ୍ଜିତ କଥା ବୋଲି ସମସ୍ତେ ବିଶ୍ୱାସ କରିବାକୁ ଲାଗିଲେ । ଏହି ସମ୍ପର୍କରେ ସ୍ୱାଧୀନତା ସଂଗ୍ରାମୀ ସୁସାହିତ୍ୟିକ ଶ୍ରୀ ବିନୋଦ କାନୁନ୍‌ଗୋ ଲେଖିଥିଲେ—"ମହାତ୍ମା ଗାନ୍ଧିଙ୍କର ପ୍ରଥମ କାମ ହେଲା ଏହି ସବୁ ଧାରଣା ଲୋକମାନଙ୍କ ମନରୁ ଦୂର କରିବା । ଇଂରେଜମାନେ ଏ ଦେଶକୁ ଶୋଷଣ କରିବା ପାଇଁ ହିଁ ଶାସନ ଚଳାଇଛନ୍ତି ବୋଲି ସେ ବଜ୍ରଗମ୍ଭୀର ସ୍ୱରରେ ଘୋଷଣା-କଲେ । ଯେଉଁ କୋର୍ଟ, କଚେରୀ, ଅଦାଲତ ସବୁ ବସିଛି, ସେଗୁଡ଼ିକ ନ୍ୟାୟ ଦେବା ପାଇଁ ନୁହେଁ, ଶୋଷଣକୁ ସମର୍ଥନ କରିବା ପାଇଁ ମୁଖ୍ୟତଃ ସୃଷ୍ଟି କରାଯାଇଛି ବୋଲି ସେ ଦୃଢ଼ତାର ସହିତ କହିଲେ ଓ ଏହି ବଜ୍ରଗମ୍ଭୀର ଘୋଷଣା ଯୋଗୁ ଦେଶରେ ଗୋଟାଏ ଚମକ ଖେଳିଗଲା । ଯେଉଁ ସରକାର ଏ ଦେଶକୁ ସବୁଦିନ ପାଇଁ ପରାଧୀନ ରଖିବାକୁ ଦୃଢ଼ପ୍ରତିଜ୍ଞ, ତାହା ସହିତ ସହଯୋଗ କରିବା ଅପରାଧ ବୋଲି ମହାତ୍ମା ଗାନ୍ଧି ଏଭଳି ଭାବରେ କହିଲେ ଯେ ଦେଶବାସୀଙ୍କ ମନକୁ କଥାଟା ପାଇଗଲା । ସେହି କାଳର ପ୍ରସ୍ତୁତକୁ ଅସହଯୋଗ ଆନ୍ଦୋଳନ ବୋଲି କୁହାଯାଏ । ସ୍କୁଲ କଲେଜ ଛାଡ଼ି ବହୁସଂଖ୍ୟକ ଛାତ୍ର ଆନ୍ଦୋଳନ ପାଇଁ ବାହାରି ଆସିଲେ । ଦେଶର ବିଭିନ୍ନ ସହରରେ ଅନେକ ଓକିଲ କୋର୍ଟ କଚେରୀକୁ ଯିବା ବନ୍ଦ କରିଦେଲେ । ଓକିଲାତି ଛାଡ଼ିଦେଲେ । ଅଳ୍ପସଂଖ୍ୟକ ସରକାରୀ କର୍ମଚାରୀ ଚାକିରି ଛାଡ଼ିଦେଇ ଆନ୍ଦୋଳନରେ ଯୋଗ ଦେଇଥିଲେ । × × × ଗୋପବନ୍ଧୁ ଚୌଧୁରୀ ସରକାରୀ ଚାକିରିରୁ ଇସ୍ତଫା ଦେଲାବେଳେ ପଣ୍ଡିତ ଲିଙ୍ଗରାଜ ମିଶ୍ର, ମଧୁସୂଦନ ବିଶ୍ୱାଳ, ସୁରେନ୍ଦ୍ରନାଥ ଦାସ, ମୌଲବି ମହମ୍ମଦ ହନିଫ୍ ପ୍ରଭୃତି ମଧ୍ୟ ଚାକିରିରୁ ଇସ୍ତଫା ଦେଇଥିଲେ । ବୀରକିଶୋର ଏହି ବାୟୁମଣ୍ଡଳ ପ୍ରଭାବରେ ସରକାରୀ ଚାକିରିର ମୋହ ଛାଡ଼ି ଦେଇଥିଲେ ।" (୨)

ସେ କାଳରେ ସରକାରୀ ଚାକିରିର ମୋହ ଅତ୍ୟନ୍ତ ପ୍ରଭାବଶାଳୀ ଥିଲା । କିନ୍ତୁ ଗାନ୍ଧିଜୀଙ୍କ ଆହ୍ୱାନରେ ୧୯୨୨ ସାଲରେ ବୀରକିଶୋର ସରକାରୀ ଚାକିରି ଛାଡ଼ିଦେଇ କଂଗ୍ରେସରେ ଯୋଗ ଦେଇଥିଲେ । ଏହିଠାରୁ ଆରମ୍ଭ ହେଲା କବି ବୀରକିଶୋରଙ୍କର ସଂଗ୍ରାମୀ ଜୀବନ ଓ କବିତ୍ୱର ସାଧନା ।

---

୨ । ଜାତୀୟ କବି ବୀରକିଶୋର—ବିନୋଦ କାନୁନଗୋ—୧୯୭୨—ପୃ. ୨୨

# କବି ବୀରକିଶୋର— ଏକ ସଂଗ୍ରାମୀ ଜୀବନର ପରିଚୟ

"ହିଂସା-ଯୁଦ୍ଧରେ ଲୋଡ଼ା ହୁଏ ନାନା ପ୍ରକାର ମାରଣାସ୍ତ୍ର । ଅହିଂସା ଯୁଦ୍ଧର ଅସ୍ତ୍ରଶସ୍ତ୍ର ହେଉଛି ମନର ବଳ । ହିଂସାର ତରବାରି ବିରୁଦ୍ଧରେ ଠିଆ ହୋଇଥିଲା ଅହିଂସାର ଦୃଢ଼ତା । ଶହ ଶହ ବର୍ଷ ପରାଧୀନତା ଭିତରେ ରହି ଜାତିର ମନଟା ସତେ ଯେପରି କି ମରିଯିବା ଅବସ୍ଥାକୁ ଆସିଯାଇଥିଲା । ତାହାର ଭିତରେ ଚେତନା, ଜାଗୃତିର ସଞ୍ଚାର କରାଇବାର ଆବଶ୍ୟକତା ପଡ଼ିଥିଲା । ସେଇଟା ଥିଲା ଶବ ଭିତରେ ପ୍ରାଣ ସଞ୍ଚାର କରାଇବା ଭଳି କାମ । ସେହି କାର୍ଯ୍ୟ ମହାତ୍ମା ଗାନ୍ଧି କରିଯାଇଥିଲେ ନିଜର ଲେଖା-ଦ୍ୱାରା, ଭାଷଣଦ୍ୱାରା । ଜାତିର କୁମ୍ଭକର୍ଣ୍ଣ ନିଦ ଭଙ୍ଗାଇବା ପାଇଁ ସେ ଯେଉଁ ଉଦ୍ୟମ କରୁଥିଲେ, ସେହି ଉଦ୍ୟମରେ ସାହାଯ୍ୟ କରୁଥିଲେ ଏ ଦେଶର କେତେଜଣ କବି । ବୀରବାବୁ ସେହିମାନଙ୍କ ମଧ୍ୟରୁ ଜଣେ । ତରବାରିଠାରୁ ଲେଖନୀ ଯେ ଅଧିକ ଶକ୍ତିଶାଳୀ ତାହାର ଜୀବନ୍ତ ପ୍ରମାଣ ସେ ଦେଇଯାଇଥିଲେ ସ୍ୱାଧୀନତା ସଂଗ୍ରାମ ସମୟରେ ।" (୮)

ଜାତୀୟ ଆନ୍ଦୋଳନର ଆହ୍ୱାନରେ ପରାଧୀନ ଭାରତବର୍ଷରେ ସରକାରୀ ଚାକିରି କରିଥିବା ବୀରକିଶୋର ଦାସ ଜାତୀୟ ସଙ୍ଗୀତ ଲେଖି ଜେଲ ବରଣ କରିଥିଲେ ଏବଂ ସରକାରୀ ଚାକିରି ମୋହ ପରିତ୍ୟାଗ କରି ଦେଶମାତୃକାର କଲ୍ୟାଣ ପାଇଁ ଆଜୀବନ ସଂଗ୍ରାମ ଏବଂ ଦୁଃଖକୁ ବରଣ କରି ନେଇଥିଲେ । ପି. ଡବ୍‌ଲିଉ. ଡି. ବିଭାଗରେ କାମ କରୁଥିବା ଯୁବକ ବୀରକିଶୋର "ମୋହନ ବଂଶୀ" ବହିଟି ଲେଖି ପ୍ରଚାର କରିଦେଲା ପରେ ଦେଶରେ ଚହଳ ପଡ଼ିଗଲା । ଇଂରେଜ ସରକାର ଏହି ବହିଟିକୁ ବାଜ୍ୟାପ୍ତ କରି-ଦେବା ପୂର୍ବରୁ ହଜାର ହଜାର ସଂଖ୍ୟାରେ ଏହା ଦେଶରେ ପ୍ରଚାରିତ ହୋଇସାରିଥିଲା । ଦେଶର ତରୁଣମାନେ ଏହି ଗୀତ ଗାଇ ଦେଶପ୍ରେମରେ ଏକପ୍ରକାର ପାଗଳ ହୋଇଗଲେ । ବିନୋଦବାବୁ ଯଥାର୍ଥରେ ଲେଖିଛନ୍ତି—"ଦଶଟା ଭାଷଣ ଯାହା କରିପାରୁ ନ ଥିଲା, ଗୋଟିଏ ଗୋଟିଏ ଜାତୀୟ ସଙ୍ଗୀତ କବିତା ତାହା କରିଦେଇଥିଲା ! ସଂଗ୍ରାମର ପ୍ରତି ସ୍ତରରେ ସେମାନେ ଦେଖୁଥିଲେ ଜାତିର ମନକୁ ପାଗ କରିବା, ସଜାଡ଼ିଦେବା, ପ୍ରତିଷ୍ଠାରେ ଜାତୀୟ ସଙ୍ଗୀତ କବିତା କରାମତି ଦେଖାଇଥିଲା । ତାଙ୍କ ଗୀତ ଏଭଳି ଉନ୍ମାଦନା ଆଣିଥିଲା, ସେ କଥା ବିଶ୍ୱାସ କରିବାକୁ ଆଜି ଅନେକ ଲୋକଙ୍କର ସାହସ କୁଳାଇବ ନାହିଁ । (୯)

---

୮ । ଜାତୀୟ କବି ବୀରକିଶୋର—ବିନୋଦ କାନୁନ୍‌ଗୋ—୧୯୭୭—ପୃ ୧୫-୧୬

୯ । ଜାତୀୟ କବି ବୀରକିଶୋର—ବିନୋଦ କାନୁନ୍‌ଗୋ—୧୯୭୭—ପୃ ୧୬

ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ, ନବକୃଷ୍ଣ ଚୌଧୁରୀ, ଭଗୀରଥ ମହାପାତ୍ର, ସରଳା ଦେବୀ, ଗୌରାଙ୍ଗ ଚରଣ ଦାସ, ନୀଳମଣି ପ୍ରଧାନ, ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତି କଟକ ଜିଲ୍ଲାର ଜଗତ୍‌ସିଂହପୁର ଅଞ୍ଚଳରୁ ଆସିଥିଲେ । ଜାତୀୟ କବି ବୀରକିଶୋର ଦାସ ମଧ୍ୟ ଏହି ଅଞ୍ଚଳରେ ପୁନଙ୍ଗ ଗ୍ରାମରେ ୧୮୯୮ମସିହା ନଭେମ୍ବର ମାସ ୨୩ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କର ନାମ ଗୋପାଳଚନ୍ଦ୍ର ଦାସ । ବୀରକିଶୋରଙ୍କ ଜନ୍ମର ମାତ୍ର ଅଢ଼େଇ ବର୍ଷ ପରେ ଅକାଳରେ ତାଙ୍କର ଜନନୀ ସଂସାର ଲୀଳା ସାଙ୍ଗ କରିଥିଲେ । ତେଣୁ ଏହି ଶିଶୁ ଅବସ୍ଥାରୁ ଜନନୀର ବାତ୍ସଲ୍ୟମମତାରୁ ବଞ୍ଚିତ ହୋଇ ବୀରକିଶୋର ପ୍ରତିପାଳିତ ହୋଇଥିଲେ ଗୋସେଇମା'ଙ୍କ କୋଳରେ । ଜଗତ୍‌ସିଂହପୁର ଅଞ୍ଚଳରେ ପୁନଙ୍ଗ ବା 'ପୂର୍ଣ୍ଣଗ୍ରାମ' ଏକ ସମୃଦ୍ଧ ଓ ଶିକ୍ଷିତ ଗ୍ରାମ ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲା । ସେ ପୁଣି ଥିଲେ ଏକ ଜମିଦାର ବଂଶର ଦାୟାଦ । ତେଣୁ ତାଙ୍କ ପିତାଙ୍କର ସ୍ୱପ୍ନ ଥିଲା ଏଇ ମାଛେହଣ୍ଡି ପିଲାଟି କପରି ଉପଯୁକ୍ତ ଶିକ୍ଷା ଲାଭ କରି ଯୋଗ୍ୟ ଏବଂ ସମ୍ମାନିତ ହେବ । ସେ କାଳରେ ଉଚ୍ଚଶିକ୍ଷିତ ପିଲାମାନେ ଇଂରେଜ ସରକାରଙ୍କ ଦପ୍ତରରେ ଚାକିରି କରି ପ୍ରଭାବଶାଳୀ ହେଉଥିଲେ । ତେଣୁ ବୀରକିଶୋର ଉଚ୍ଚଶିକ୍ଷା ଲାଭ କରି କିପରି ଜଣେ ବଡ଼ ସରକାରୀ ଏବଂ ରାଜକର୍ମଚାରୀ ହେବେ ବୀରକିଶୋରଙ୍କ ବାପା ଏପରି କଳ୍ପନା କରିବା ଅତ୍ୟନ୍ତ ସ୍ୱାଭାବିକ । ତେଣୁ ଗ୍ରାମ ଚାଟଶାଳୀ ପାଠ ଶେଷ ପରେ ମାତ୍ର ପାଞ୍ଚ ବର୍ଷ ବୟସରେ ବୀରକିଶୋର ଆସି କଟକରେ ରହି ଅଧ୍ୟୟନ କଲେ । କାରଣ ସେ କାଳରେ ପଲ୍ଲୀ ଅଞ୍ଚଳରେ ଶିକ୍ଷା ଲାଭ ପାଇଁ ବିଶେଷ ବ୍ୟବସ୍ଥା ନ ଥିଲା । ମାତ୍ର ସମୟର ଗତି ବଡ଼ ବିଚିତ୍ର । ବୀରକିଶୋର ଯେତେବେଳେ ମାତ୍ର ଆଠବର୍ଷର କିଶୋର, ତାଙ୍କର ପିତା ଭୀଷଣ ବାତଜ୍ୱରରେ ପୀଡ଼ିତ ହୋଇ କଟକ ଛାଡ଼ି ନିଜର ପଲ୍ଲୀ ଗ୍ରାମରେ ଅବସ୍ଥାନ କଲେ । ଯାହା ହେଉ, ଜଣେ ଗ୍ରାମବାସୀ ବର୍ଷୀୟାନ୍ ପଡ଼ୋଶୀଙ୍କ ପ୍ରଚେଷ୍ଟାରେ ବୀରକିଶୋର ପୁନର୍ବାର କଟକ ଆସି ସେ କାଳର ବିଖ୍ୟାତ ଭିକ୍ଟୋରିଆ ସ୍କୁଲ (ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ)ରେ ନାମ ଲେଖାଇଲେ ।

୧୯୧୪ ମସିହାରେ ବୀରବାବୁ ମାଟ୍ରିକ୍ ପାସ୍ କଲେ । ପିତା ପୀଡ଼ିତ ହୋଇ-ପଡ଼ିବା ପରେ ଘରର ଦୁର୍ଗତି ବଢ଼ିବାକୁ ଲାଗିଲା । ମାଟ୍ରିକ୍ ପାସ୍ ପରେ ବୀରକିଶୋର କିଛିକାଳ କଲେଜରେ ଅଧ୍ୟୟନ କରିଥିଲେ ହେଁ ପାଠପଢ଼ାରେ ତାଙ୍କର ମନ ଲାଗିଲା ନାହିଁ । ତେଣୁ ପିତା ଗୋପାଳଚନ୍ଦ୍ର ତାଙ୍କୁ ସରକାରୀ ଚାକିରିରେ ଭର୍ତ୍ତିକରିବା ପାଇଁ ଉଦ୍ୟମ କରିଥିଲେ । ନିଜର ଚାକିରି ଜୀବନ ସମ୍ପର୍କରେ କବି ବୀରକିଶୋର ଜ୍ୟେଷ୍ଠପୁତ୍ର ନିରଞ୍ଜନ ଏବଂ ପୁତ୍ରବଧୂ ସ୍ନେହଲତାଙ୍କ ନିକଟକୁ ଲେଖିଥିବା ଚିଠି ଏହିପରି—"ମୁଁ ପଢ଼ିବାକୁ ଆଗ୍ରହୀ ହେଲିନାହିଁ । ବାପା ମୋତେ ସରକାରୀ ଚାକିରିରେ ରଖାଇଦେଲେ । ସେ ସମୟରେ ଦରଖାସ୍ତ ମାସିକ ପାଇ କରାଣୀ କାମ ଶିଖନ୍ତି । ମୁଁ ଦୁଇମାସ ରହିଲା

ପରେ Bank S. D. O. ଅଫିସ୍‌କୁ କପିଷ୍ଟ ହୋଇ ବଦଳି ହେଲି । ମାତ୍ର ବାକି ଜଙ୍ଗଲ ଜାଗା ବୋଲି ଚାକିରିରୁ ଇସ୍ତଫା ଦେଲି । ତା ପରେ ସ୍ଥାୟୀ କାର୍ଯ୍ୟ ନ ପାଇ କମିଶନର ଅଫିସ୍ Canal Revenue ଅଫିସ୍, ପୋଷ୍ଟ ଅଫିସ୍ ପ୍ରଭୃତିରେ ରହି ପ୍ୟାରୀ ମୋହନ ଏକାଡେମୀରେ ଶିକ୍ଷକ ହୋଇ ଠିକାରେ ବର୍ଷେ କଟାଇଲା ପରେ ପି. ଡବ୍ଲ୍ୟୁ. ଡି. ରେ ସ୍ଥାୟୀ କାର୍ଯ୍ୟ ପାଇଲି । ୫୫ ଟଙ୍କାରେ ଟ୍ରାଫିକ୍ ଅସିଷ୍ଟାଣ୍ଟ ହେଲି । ଏଠି ବର୍ଷେ ରହିବା ପରେ ଗାନ୍ଧିଜୀଙ୍କ ଆହ୍ୱାନରେ କଂଗ୍ରେସରେ ଯୋଗ ଦେଲି ।'' (୧୦)

୧୯୨୧ ବେଳକୁ ଭାରତରେ ଚାରିଆଡ଼େ ମହାତ୍ମା ଗାନ୍ଧିଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନ ଚହଳ ପକାଇ ସାରିଥାଏ । ଜାତୀୟ ଆନ୍ଦୋଳନରେ ଉଦବୃଦ୍ଧ ହୋଇ ବହୁ ସରକାରୀ କର୍ମଚାରୀ, ଛାତ୍ର ଓ ବାନରସେନା କର୍ମୀ ତହିଁରେ ଯୋଗ ଦେଉ-ଥାଆନ୍ତି । ବୀରକିଶୋରଙ୍କ ସାନ ଭାଇ ବାନାମ୍ବର ବାନରସେନାରେ ଯୋଗ ଦେଇ କଟକର ସ୍ୱରାଜ ଆଶ୍ରମରେ ଅବସ୍ଥାନ କରୁଥାଆନ୍ତି । ଏହାଯୋଗୁଁ ବୀରକିଶୋରଙ୍କର ମନ ଛଟପଟ ହୋଇଥାଏ । ସେ ନିଜ ସାନ ଭାଇ ବାନାମ୍ବରର ଛଦ୍ମନାମରେ ଜାତୀୟ-ସଙ୍ଗୀତ ଗୁଡ଼ିଏ ରଚନା କରି ୧୯୨୨ ସାଲରେ 'ମୋହନବଂଶୀ' ବୋଲି ପୁସ୍ତକଟିଏ ମୁକୁର ପ୍ରେସ୍ ଆନୁକୂଲ୍ୟରେ ଛପାଇଦେଲେ । ବୀରକିଶୋର ସରକାରୀ ଚାକିରି କରିଥିଲେ ମଧ୍ୟ ତାଙ୍କର ମନରେ ଜାତୀୟ ଭାବନାର ବୀଜ ୧୯୧୮ ମସିହାରୁ ରୋପିତ ହୋଇ-ସାରିଥିଲା । ଏହି ବର୍ଷ କଟକରେ ଉତ୍କଳ ସମ୍ମିଳନୀର ଅଧିବେଶନ ହେଉଥାଏ । ବୀରକିଶୋର ମଧୁସୂଦନ ଦାସଙ୍କ ନିମନ୍ତ୍ରଣକ୍ରମେ ଏହି ସମ୍ମେଳନରେ ଯୋଗଦେଇ ଯେତେବେଳେ ମଧୁବାବୁଙ୍କ ରଚିତ 'ଜାତିପ୍ରେମ ବହ୍ନି ପ୍ରଜ୍ୱଳିତ କର ସ୍ୱାର୍ଥକୁ ଦିଅ ଆହୂତି' ଗୀତ ଶୁଣିଲେ, ତାଙ୍କର ସ୍ୱଦେଶ ଭାବନା ସଜୀବ ହୋଇ ଉଠିଲା । ତାଙ୍କର ଅଜାଣତରେ ଉତ୍କଳଗୌରବ ମଧୁସୂଦନ ହୋଇଗଲେ ବୀରକିଶୋରଙ୍କ ଜାତୀୟ ଚେତନାର ପ୍ରଧାନ ମନ୍ତ୍ରଦାତା । ତେଣୁ ସେ ଯେତେବେଳେ ଛଦ୍ମ ନାମରେ 'ମୋହନବଂଶୀ' ପ୍ରକାଶ କଲେ, ସେତେବେଳେ ପୁସ୍ତକଟିକୁ ମଧୁସୂଦନ ଦାସଙ୍କୁ ଉତ୍ସର୍ଗ କଲେ । ସେହି ଉତ୍ସର୍ଗ ପତ୍ରରେ କବି ଲେଖିଥିଲେ—

"ପୂଜ୍ୟପାଦ ! ଆପଣଙ୍କ ରୋପିତ ସେହି ଉତ୍କଳ ମିଳନ ମେଳା ପାଦପଟି ସେ ମହାତ୍ମାଙ୍କର ସ୍ୱଦେଶ-ପ୍ରେମ ମଳୟ ସ୍ପର୍ଶରେ ଆଜ କୁସୁମ ମଞ୍ଜରୀ ଧାରଣ କରିଅଛି, ସେହି ମହାତ୍ମା ଆଜକୁ ଏକ ବର୍ଷ ହେଲା ହିମାଚଳଠାରୁ ସୀମାଚଳ ପର୍ଯ୍ୟନ୍ତ ଏକ ଅପୂର୍ବ ମୋହନବଂଶୀ ବାଦନ କରୁଅଛନ୍ତି । ସେ ମୋହନବଂଶୀର ନାଦରେ ପଞ୍ଚନଦୀର ଜଳ, ଚିଲିକାର ଜଳ ସଙ୍ଗେ ମିଶିବାକୁ ବସିଛି; ସେ ମୋହନବଂଶୀ ନାଦରେ ହିମାଦ୍ରି ଶିଖର

୧୦ । ଜାତୀୟ କବି ସ୍ମରଣେ—ଜାତୀୟ କବି ବୀରକିଶୋର ଜୟନ୍ତୀ ଉତ୍ସବ—'୯୮୬ ପୃ ୩-୪ ।

ମେଘାସନକୁ ଆଲିଙ୍ଗନ କରିବାକୁ ଚାହିଁବସିଛ । ସେ ମୋହନବଂଶୀ ନିନାଦରେ ଦ୍ରାବିଡ଼ନାଡ଼ ପଞ୍ଜାବବାସୀଙ୍କ ସକାଶେ ପ୍ରାଣ ଦେବାକୁ ଅଥୟ ହେଉଅଛନ୍ତି । ସେ ମୋହନବଂଶୀ ନାଦରେ ଆଜି ଭାଇମାନେ ଧର୍ମ ସକାଶେ ଖଡ଼୍ଗ ଧାରଣ ନ କରି ହସି ହସି କଣ୍ଟୀର ବନ୍ଦୀଶାଳାରେ ବସି କତା ଦଉଡ଼ି ବଳୁଅଛନ୍ତି ।'' (୧୧)

ମୋହନବଂଶୀର ଏକ ବିଖ୍ୟାତ କବିତା ହେଉଛି 'ଉତ୍କଳଜନନୀ' । ସେଥିରେ କବି ବୀରକିଶୋର ଲେଖିଛନ୍ତି—

କେତେ ଓଲଟ ପାଲଟ ହେବୁଁ, ଗୋ ଜନନୀ
ଝଳି କି ଶୁଣିବୁ ନାହିଁ ?
ମାଡ଼ ଗାଳି ଖାଇ ସବୁ ଦୁଃଖ ସହି
ପଡ଼ିଛୁ ତୋ ପାଦ ଚାହିଁ ।
ନାଡ଼ ପଦ୍ମବନେ ଗୀତ ପାହିଲଣି
ଡାକ ଶୁଭେ ଭାଇ ଭାଇ,
ଆମେ ସବୁ ଆଜ ବାସି ଶେଯେ ବସି
ଅଳସେ ମାରୁଛୁ ହାଇ ।
ଭାରତ ବଗିଚ୍ଚ କର୍ମଫୁଲେ ଭରି
ଫୁଲ ଫୁଟେ ଗଛେ ଗଛେ,
ସବୁ ଭାଇ ମିଳି ଫୁଲ ତୋଳିଗଲେ
ଆମେ ତ ରହିଲୁ ପଛେ ।
ନାହିଁ ମାଘ ମାସ ସେ ବାଘୁଆ ଜାଡ଼
ନାହିଁ ସେ ଶିଶିର ଭୟ,
କର୍ମବୃନ୍ଦ-ପାଦ-ପଦ୍ମ ଲାଗି ଆଜ
ଭାରତେ ବହେ ମଳୟ ।
ଡାକନ୍ତି ରବୀନ୍ଦ୍ର ଯୋଗୀ ଅରବିନ୍ଦ
ଆଲି ଭାଇ ଲାଜପତ,
ପଣ୍ଡିତ ମଦନ ଆନ୍ଧ୍ରୁ ତପୋଧନ
ମୋତିଲାଲ ଦେଶଭକ୍ତ ।
ଗୟାରେ ଡାକନ୍ତି ସୁଧୀ ଚିତ୍ତରଞ୍ଜନ
ଗଙ୍ଗାକୂଳେ ଦେଶବନ୍ଧୁ,
ଆମେ କପାଁ ଅଜ୍ଞ ମୂକ ହେଲୁ ମାଗୋ
ଅଙ୍ଗ କି ହୋଇଲା ପଙ୍ଗୁ ।''

---

୧୧ । ମୋହନ ବଂଶୀ—୧୯୨୨-ଉତ୍ସର୍ଗ ପତ୍ର

ମହାତ୍ମା ଗାନ୍ଧୀଙ୍କର ବାଣୀ ଆକୁମାରୀ-ହିମାଚଳ ଦେଶର ସମସ୍ତ ପ୍ରାନ୍ତରେ ନୂତନ ଚିନ୍ତାର ସଞ୍ଚାର କରିଥିଲା । ଦରିଦ୍ର ଜନସାଧାରଣ ଅଶିକ୍ଷାର ଅମା ଅନ୍ଧକାର ମଧ୍ୟରେ ଛଟପଟ ହେଉଥିଲେ ହେଁ ମହାତ୍ମା ଗାନ୍ଧୀଙ୍କର ଆହ୍ୱାନ ସେମାନଙ୍କର ହୃଦୟକୁ ଚହଲାଇ ଦେଲା । ଝିଙ୍ଗୁବେଲର କୁଣ୍ଠା କାଟି ପରି ସ୍ୱେଚ୍ଛା ବୈପ୍ଳବିକ ସ୍ରୋତରେ ବହୁ ତରୁଣ ତରୁଣୀ ଅକୁଣ୍ଠ ଚିତ୍ତରେ ଝାସ ଦେଇଦେଲେ ସମସ୍ତ ଦୁଃଖ କଷ୍ଟକୁ ବରଣ କରି । ଇଂରେଜ ଶାସନ କାଳର ମୋହ ଯେ ଅନେକଙ୍କୁ ଆଚ୍ଛନ୍ନ କରି ରଖିଥିଲା, ଏଥିରେ ସନ୍ଦେହ ନାହିଁ । କବି ବୀରକିଶୋର ଲେଖିଥିଲେ –

"ଆମେ ଆଜି ମାଗୋ, ଦାନା କନାଲାଗି
ଖୋଜୁଛୁ କିରାଣୀଗିରି ।"

କିନ୍ତୁ କିରାଣୀଗିରିର ମୋହରେ କବି ଆଉ ବାନ୍ଧି ହୋଇ ରହିପାରିଲେ ନାହିଁ । ଦେଶର ଚତୁର୍ଦ୍ଦିଗରେ ଏକ ବୈପ୍ଳବିକ ଭାବନାର ତରଙ୍ଗରେ ସାମାଜିକ ଜୀବନରେ ଅଭାବନୀୟ ପରିବର୍ତ୍ତନ ଦେଖାଗଲା । ଲୋକମାନଙ୍କ ମନରେ ଆସିଲା ଏକ ନୂତନ ସମ୍ଭାବନାର ସ୍ୱପ୍ନ । ପରାଧୀନତାର ଗ୍ଳାନି ଏବଂ ବିଦେଶୀ ଶୋଷଣର ନାଗଫାଶରୁ ମୁକ୍ତିଲାଭ କରିବା ପାଇଁ ଜାତୀୟ ଜୀବନରେ ଅହରହ ବ୍ୟାକୁଳତା ପ୍ରକାଶ ପାଇଲା । ସେହି ବ୍ୟାକୁଳତାକୁ ରୂପାୟିତ କଲେ କବି ବୀରକିଶୋର 'ଉତ୍କଳଜନନୀ' କବିତାରେ ଏହିପରି—

"ତୋହର ସନ୍ତାନ ବୋଲି ଯେତେ ଆମ
ହୃଦୟରେ ଥାଉ ଜ୍ଞାନ,
ସତ୍ୟ ଯୋଗୁଁ ଆମ ଦେହ ଟଳିଯାଉ
ଧର୍ମ ଯୋଗୁଁ ଯାଉ ପ୍ରାଣ ।"

କବି କିରାଣୀ ଜୀବନର ଆବଦ୍ଧ ପରିବେଶ ମଧ୍ୟରେ ଭୟଙ୍କର ଚିତ୍ତଚାଞ୍ଚଲ୍ୟର ସମ୍ମୁଖୀନ ହେଲେ । ଏକ ପକ୍ଷରେ ପିତାଙ୍କର ସ୍ୱପ୍ନ—ପୁଅ ହେବ ଇଂରେଜ ସରକାରଙ୍କର ରାଜକର୍ମଚାରୀ, ସମ୍ମାନ ଓ ପ୍ରତିଷ୍ଠା ଅର୍ଜନ କରିବ । ଅନ୍ୟପକ୍ଷରେ ଦେଶମାତୃକାର ଆହ୍ୱାନ ! 'ମୋହନବଂଶୀ' ପୁସ୍ତକର 'ଧର୍ମବାଣୀ' କବିତାରେ କବିଙ୍କର ତତ୍କାଳୀନ ମାନସିକ ପ୍ରତିକ୍ରିୟା ଅତ୍ୟନ୍ତ ମାର୍ମିକ ଭାବରେ ପ୍ରତିଫଳିତ ହୋଇଛି । ବିଦେଶୀ ବଣିକ ଇଂରେଜ ଜାତି ଏ ଦେଶକୁ ପଦାନତ କରି ଅତ୍ୟନ୍ତ ନିଷ୍ଠୁର ଭାବରେ ଶୋଷଣ କରିବାକୁ ଲାଗିଛନ୍ତି । ଆଗର ଶିଳ୍ପ ଓ ଶିଳ୍ପୀକୁଳକୁ ସେମାନେ ଧ୍ୱଂସ କରିଦେଇ ନିଜ ଦେଶର ଅର୍ଥନୈତିକ ସ୍ୱାର୍ଥ ହାସଲ କରିଛନ୍ତି । ତାଙ୍କ ମତରେ :

"ସୁନାର ଭାରତ ଆମ ହେଲା ଛାରଖାର
ଖାଇବାକୁ ନ ପାଇଲୁ ଓଳିଏ ଆହାର ।

× × ×

ପଢ଼ି ପଢ଼ି ଅମ୍ଭେମାନେ ହେଲୁ ବଡ଼ବାବୁ,
ଜଣାଗଲା ଏତେ ଦିନେ ଆମ ଜାତି କାବୁ ।
ବାନ୍ଧିଲା କଙ୍କଡ଼ା ପରି ଆମ ଜାତି ବଳ
ଟାଣି ନେଇଗଲା ସବୁ ୟୁରୋପର କଳ ।
ଟାଣିନେଲା ଧନ ଗୃହ ଟାଣିନେଲା ଧାନ
ସର୍ବଶେଷେ ଟାଣିନେଲା ପିଣ୍ଡରୁ ପରାଣ ।"

ଦେଶର ଏହିପ୍ରକାର ଦୁର୍ଗତି ଦେଖି ଦେଶପ୍ରାଣ ଯୁବକକବି ବୀରକିଶୋରଙ୍କ ପ୍ରାଣରେ ଭୟଙ୍କର ଆକୁଳତା ପ୍ରକାଶିତ ହେଲା । ସେ ଆଉ ବ୍ୟକ୍ତିସ୍ୱାର୍ଥରେ ବାନ୍ଧିହୋଇ ରହିପାରିଲେ ନାହିଁ । ଯୋଗକୁ ମହାତ୍ମା ଗାନ୍ଧୀଙ୍କର ଅମରବାଣୀ ତାଙ୍କର ହୃଦୟରେ ନୂତନ ମନ୍ତ୍ର ସଞ୍ଚାର କରିଦେଲା । ମନେପଡ଼ିଲା ଉତ୍କଳଗୌରବ ମଧୁସୂଦନଙ୍କର ଦେଶ ପାଇଁ ଆହ୍ୱାନ । ବୀରକିଶୋର ଲେଖିଲେ–

"ତୋମାନଙ୍କ ପରି ମୋର ଜୀବ ଲିଭିଯାଉ
ହିମାଚଳ ଗିରି ମୋର ସ୍ୱାଧୀନତା ପାଉ ।
× × ×
ଏ ଜୀବନ ଦାନ କଲି ଦେଶଲାଗି ଭାଇ
ଆଗ ପଛ କଥା କିଛି ବାରେ ଚିନ୍ତା ନାହିଁ ।"

ପରିଶେଷରେ ଗାନ୍ଧିଜୀଙ୍କ ଆହ୍ୱାନରେ ୧୯୨୨ ମସିହାରେ ବୀରକିଶୋର ସରକାରୀ ଚାକିରିରୁ ଇସ୍ତଫା ଦେଇ କଂଗ୍ରେସ ଆନ୍ଦୋଳନରେ ଯୋଗଦେଲେ । ଏଥିରେ ତାଙ୍କର ସାମନ୍ତବାଦୀ ପିତା ବିଚଳିତ ହେବା ସ୍ୱାଭାବିକ । କାରଣ ପୂର୍ବରୁ କନିଷ୍ଠ ସନ୍ତାନ ବାନାମ୍ବର ଅସହଯୋଗ ଆନ୍ଦୋଳନରେ ବାନରସେନା ହୋଇ ସାରିଥିଲେ । ଜ୍ୟେଷ୍ଠ ବୀରକିଶୋର ଆନ୍ଦୋଳନରେ ଯୋଗ ଦେବା ଯୋଗୁ ତାଙ୍କର ସ୍ୱପ୍ନ ପରାହତ ହୋଇଗଲା । ଇଂରେଜ ସରକାରଙ୍କ କୋପଦୃଷ୍ଟି ପଡ଼ିଲେ ତାଙ୍କର ଜମିଦାରୀ ବାଜ୍ୟାପ୍ତ ହୋଇଯିବ । ତେଣୁ ସେ ପୁଅ ଦୁହିଁଙ୍କ ସହିତ ଏକପ୍ରକାର ସମ୍ପର୍କ ଛିନ୍ନ କରିଦେଲେ ନିଜର ବିଷୟସ୍ୱାର୍ଥକୁ ରକ୍ଷା କରିବା ପାଇଁ । ଫଳରେ ବୀରକିଶୋରଙ୍କ ରାଜନୈତିକ ଜୀବନ ଅତ୍ୟନ୍ତ ଦୁଃଖ, ଦୁର୍ଦ୍ଦଶା ଓ ଅନିଶ୍ଚିତ ବାତାବରଣ ମଧ୍ୟକୁ ଠେଲି ହୋଇଗଲା ।

**ବେଣ୍ଟ ଉପରେ କୋରଡ଼ା**

ବୀରକିଶୋର ଆଉ ଏକ ଭୀଷଣ ପରୀକ୍ଷାର ସମ୍ମୁଖୀନ ହେଲେ । ହଠାତ୍ ତାଙ୍କର ବାହାଘରର ଯୋଗାଡ଼ ଚାଲିଲା । ସେତେବେଳେ କଟକରେ ଜଣେ ଜଣାଶୁଣା ଓକିଲ

ଥିଲେ ଧର୍ମାନନ୍ଦ ପଟ୍ଟନାୟକ । ଧର୍ମାନନ୍ଦ ଥିଲେ କଟକ ଜିଲ୍ଲାର 'ନୋଦା' ଗ୍ରାମର ଜମିଦାର । ତାଙ୍କର ଜ୍ୟେଷ୍ଠ ଜାମାତା ବୀରକିଶୋର ଗୁପ୍ତ ସେ କାଳର ଜଣେ ବିଶିଷ୍ଟ ଆଇନଜୀବୀ ଥିଲେ ଯେ କି ପରେ ଓଡ଼ିଶା ହାଇକୋର୍ଟର ପ୍ରଥମ ପ୍ରଧାନ ବିଚାରପତି ଭାବରେ ସୁନାମ ଅର୍ଜନ କରିଥିଲେ । ଧର୍ମାନନ୍ଦ ଥିଲେ ଅସହଯୋଗ ଆନ୍ଦୋଳନର ସମର୍ଥକ । ସେ ବୀରକିଶୋରଙ୍କ ଜାତୀୟତାବ୍ୟଞ୍ଜକ କବିତାର ପରିଚୟ ଲାଭ କରି ଅତ୍ୟନ୍ତ ଆକୃଷ୍ଟ ହୋଇପଡ଼ିଲେ । ମନେକଲେ, ଏଭଳି ଯୁବକ ହସ୍ତରେ ସେ ତାଙ୍କର ମଧ୍ୟମା କନ୍ୟା ଶ୍ରୀମତୀ ସାରଦାଙ୍କୁ ଅର୍ପଣ କରିବେ । କୁଜଙ୍ଗ ଜମିଦାରଙ୍କ ଜାମାତା ଦେଶସେବକ ନାରାୟଣ ବୀରବର ସାମନ୍ତ ଥିଲେ ବୀରକିଶୋରଙ୍କର ଅନ୍ତରଙ୍ଗ ବନ୍ଧୁ । ତାଙ୍କର ମଧ୍ୟ ଓକିଲ ଧର୍ମାନନ୍ଦବାବୁଙ୍କ ସହିତ ଆଳାପ-ପରିଚୟ ଥାଏ । ଏହି ବିବାହ କାର୍ଯ୍ୟରେ ସେ ମଧ୍ୟସ୍ଥ ପରି କାର୍ଯ୍ୟ କଲେ । ନିଜର ବିବାହ ପ୍ରସଙ୍ଗ ବିଷୟରେ କବି ବୀରକିଶୋର ଏକ ଚିଠିରେ ତାଙ୍କର ପୁଅ ନିରଞ୍ଜନଙ୍କ ପାଖକୁ ଲେଖିଥିଲେ—"କପାଳକୁ ୧୯୨୩ ମସିହାରେ ତମ ବୋଉଙ୍କ ବାପା ଧର୍ମାନନ୍ଦବାବୁ ଓକିଲ ମୋ ଜାତକ ବାପାଙ୍କ ପାଖରୁ ମଗାଇ ବିବାହ ପ୍ରସଙ୍ଗ ପକାଇଲେ । ସେ କଂଗ୍ରେସରେ ଯୋଗଦେଇ ଓକିଲାତି ଛାଡ଼ିଥାନ୍ତି । ନାରାୟଣ ବୀରବର ସାମନ୍ତ ମଧ୍ୟସ୍ଥ ହେଲେ । ତାଙ୍କ କୁଆଁରି ମୁଖ୍ୟ ବିଚାରପତି ଘୋର ବିରୋଧ କଲେ ପୁଣି ଧର୍ମାନନ୍ଦବାବୁ ଜାତକ ଉପରେ ଦୃଢ଼ ବିଶ୍ୱାସ ରଖି ବିବାହ କାର୍ଯ୍ୟ ସମ୍ପନ୍ନ କରାଇଲେ । ପରେ ସାବତ ମା' ଅଛୁ ବୋଲି ଜାଣି ଟିକିଏ ଦୁଃଖ କଲେ । ତାଙ୍କର ଯଥାସାଧ୍ୟ ସାହାଯ୍ୟ କରି ମତେ ଆଇନ୍ ପରୀକ୍ଷା ଦେବାକୁ ଲଗାଇଲେ । ମାତ୍ର ମୁଁ ସେ କଥାକୁ ଶୁଣିଲି ନାହିଁ ।"[୧୨]

ବୀରକିଶୋର ଜମିଦାର ଘରେ ଜନ୍ମଗ୍ରହଣ କରିଥିଲେ ହେଁ ସାମନ୍ତବାଦୀ ଆଭିଜାତ୍ୟ ଚଳଣି ପ୍ରତି ତାଙ୍କର ସମର୍ଥନ ନ ଥିଲା । ବେଶଭୂଷଣ ଓ ଆଚରଣରେ ସେ ଥିଲେ ଅତ୍ୟନ୍ତ ଅମାୟିକ, ନିରଳସ ଏବଂ ସାଧାରଣ । ତେଣୁ ଅତ୍ୟନ୍ତ ନିରାଡ଼ମ୍ବର ଭାବରେ ବରବେଶ ପିନ୍ଧି ଯେତେବେଳେ 'ନୋଦା' ଗ୍ରାମରେ ପହଞ୍ଚିଲେ, ପ୍ରଜା, ଗ୍ରାମବାସୀ ଓ ଜ୍ଞାତିକୁଟୁମ୍ବ ସମସ୍ତେ ବିଚଳିତ ହୋଇପଡ଼ିଲେ । ସେମାନେ ଆଶା କରୁଥିଲେ, ଜମିଦାର ଘର ଜାମାତା ମହାଆଡ଼ମ୍ବର ସହକାରେ ତାଙ୍କ ଗ୍ରାମରେ ପଦାର୍ପଣ କରିବେ । କିନ୍ତୁ ବୀରକିଶୋର ଖଦଡ଼ ଲୁଗା ପିନ୍ଧି ସାଧାରଣ ବେଶରେ ଯେତେବେଳେ ବେଦୀରେ ବରଣ ହେଲେ, ସେତେବେଳେ ବାରଲୋକଙ୍କ ମୁହଁରେ ତେରକଥା ଆଲୋଚନା ହେବାକୁ ଲାଗିଲା । ଏଥିରେ ବିଚଳିତା ହୋଇ କବିପତ୍ନୀଙ୍କର ସାନଭଉଣୀ ଅପାଙ୍କ ପାଖକୁ ଚିଠି ଲେଖିଲେ—

---

୧୨ । ଜାତୀୟ କବି ସ୍ମରଣେ—୧୯୮୭—ପୃ ୪

"ଅପା, ତୁ ଗଲାଦିନୁ ମୋ ମନ ଭଲ ନାହିଁ । ସବୁବେଳେ କାନ୍ଦ ମାଡୁଛି । ତୁ କେବେ ଆସିବୁ ? ଭିଣୋଇଙ୍କୁ ମୋର ପ୍ରଣାମ । ତାଙ୍କୁ ଆମ ଗାଁରେ କେହି ପସନ୍ଦ କଲେ ନାହିଁ । ବଡ଼ ବୃକରଥ ଦାମୀ ପୋଷାକରେ ଆସିଥିଲେ ସିନା ସମସ୍ତେ ଜାଣିଥାନ୍ତେ ବଡ଼ ଲୋକଘର ପୁଅ ବୋଲି ! ତାଙ୍କ ବାପା ତ ସେଠା ଜମିଦାର । ସେ ସ୍ଲେଟକାଟିଆ ଲୋକ ଭଳି ଦେଖାଯାଉଥିଲେ ଓ ଓଲୁଙ୍କ ପରି ଚୁପ୍ ହୋଇ ବସୁଥିଲେ କାହିଁକି ? ଆମ ଘରେ ସମସ୍ତେ ମନ ଦୁଃଖରେ ଅଛନ୍ତି ।"[୧୩]

କବି ବୀରକିଶୋର ଅଲ୍ପଅଳୀ ଶାଳିକାଙ୍କର ଚିଠିଟି ପାଇ କୌତୁକରେ ଯେଉଁ ଉତ୍ତର ଦେଇଥିଲେ ଗୀତରେ, ତହିଁରୁ ତାଙ୍କର ବ୍ୟକ୍ତିତ୍ୱ, ଆତ୍ମବିଶ୍ୱାସ ଏବଂ ଦେଶପ୍ରାଣତା ପରିସ୍ଫୁଟ ହେଉଛି । କବି ଲେଖିଥିଲେ ଏହିପରି—

"କଥା ପଢ଼ିବାରୁ ଆଜି କହୁଛି ଫିଟାଇ
ମୋ କଥାକୁ ମନେ ଘେନା କରିବ ଗୋ ନାହିଁ ।
ବହି ଖଣ୍ଡେ ଲେଖିଥିଲି ମୋର ନିଜ ହସ୍ତେ
କଟକ-ପୁରୀ-ବାଲେଶ୍ୱରେ ଜାଣନ୍ତି ସମସ୍ତେ ।
ସରକାର ଲେଖା ଦେଖି ଗଲେ ମୋତେ ଡରି
ଚାକିରି ଖଣ୍ଡି ଛଡ଼ାଇ ଦେଲେ ମୁକ୍ତ କରି ।
ଶ୍ୱାନ ସିନା ବନ୍ଧାହୁଏ ଲୁହା ଜଞ୍ଜିରରେ,
ସିଂହ କେବେ ବନ୍ଧା ହେବ କହ ଗୋ ତହିଁରେ ?
କୁଟୀର ନିବାସୀ ହୋଇ ଯାପିବି ଜୀବନ
ଟଙ୍କା ପାଇଁ ଗୋଲାମିରେ ନାହିଁ ମୋର ମନ ।

× × ×

ସାରା ଓଡ଼ିଶାରେ ମତେ ଜାଣନ୍ତି ସମସ୍ତେ,
ତମେ ପଛେ ଓଲୁ ବୋଲି ଡାକୁଥାଅ ମୋତେ ।
ଘୁଷୁରି ଜାଣିବେ କାହୁଁ ପାଚିଲା କଦଳୀ,
କୁକୁରକୁ କେବେ ଭଲଲାଗେ ରସାବଳୀ ?
ଶବରୁଣୀ ଚନ୍ଦ୍ରକାନ୍ତ କି ସ୍ୱାଦକୁ ସଙ୍ଗାତ
ସାର ଗୁଞ୍ଜ କାଇଁଞ୍ଚକୁ ବଢ଼ାନ୍ତି ସେ ହାତ ।
ନୋଦା ଜମିରେ ମୋତେ ଚହଲିବେ କି ଲୋକେ,
ଖରାବେଳେ ନ ମିଳଇ ଯହିଁ ପାଣି ଢୋକେ ।

---

୧୩ । ବିପ୍ଳବର ବାର୍ତ୍ତାବହ ଜାତୀୟ କବି ବୀରକିଶୋର—ଜାତୀୟ କବି ବୀରକିଶୋର ସ୍ମୃତି ସଂସଦ, କଟକ—୧୯୮୬—ପୃ ୯

କୂପରେ ନ ବୁଡ଼େ କୋଟା ନାହିଁଟି ସଡ଼କ,
ବର୍ଷାଦିନେ ଯମ ଡରେ ନ ଆସେ ମଡ଼କ ।
ଗଛଡାଳେ ଚଢ଼ି ଯହିଁ ବସନ୍ତ ପୋଖରୀ,
ସମସ୍ତେ ଗୋଲାମ ଯହିଁ ସର୍କାରୀ ଚାକର ।''[୧୪]

କବି ବୀରକିଶୋର କିପରି ସ୍ୱାଧୀନଚେତା ଏବଂ ଅଟଳ ଲୋକ ଥିଲେ, ତାହା ଏହି କବିତାରେ ପ୍ରତିଫଳିତ । ବାସ୍ତବିକ ବ୍ୟାବହାରିକ ଜୀବନରେ ସେ ଥିଲେ ଅତ୍ୟନ୍ତ ସ୍ନେହପ୍ରବଣ, ସହାନୁଭୂତିଶୀଳ ଏବଂ ରହସ୍ୟପ୍ରିୟ । ସାନ ବଡ଼ ନିର୍ବିଶେଷରେ ସେ ଥିଲେ ସମସ୍ତଙ୍କର ଅତ୍ୟନ୍ତ ଆପଣାର । ଅଭାବ ଓ ଦୁର୍ଦ୍ଦିନ ମଧ୍ୟରେ ଅହରହ କାଳାତିପାତ କରିଥିଲେ ହେଁ ସେ ଥିଲେ ସର୍ବଦା ମୁକ୍ତହସ୍ତ । ପରିବାରର ସ୍ୱାର୍ଥକୁ ନ ଚାହିଁ ସେ ଅକାତରେ ଧାଇଁଯାଉଥିଲେ ଅନ୍ୟର ସେବା ଓ ସାହାଯ୍ୟ କରିବା ପାଇଁ । ସେଥିପାଇଁ ସେ ଅନେକ ସମୟରେ କାବୁଲିମାନଙ୍କ ପାଖରେ ବନ୍ଧା ପଡ଼ୁଥିଲେ । ଅନ୍ୟର ଦୁଃଖ ସେ ଆଦୌ ସହ୍ୟ କରିପାରନ୍ତି ନାହିଁ । ଉଦାର ମନରେ ଧାର କରଜ କରି ସେ ଧାଇଁଯାଆନ୍ତି ସାହାଯ୍ୟ କରିବା ପାଇଁ । ଏଥିପାଇଁ ସେ ଜୀବନରେ ଅନେକ ଥର ଅପଦସ୍ତ ହୋଇଛନ୍ତି, କିନ୍ତୁ ତାଙ୍କର ହୃଦୟରୁ ସାହାଯ୍ୟ କରିବାର ମହତ୍ ଭାବନାକୁ ଭୁଲିଯାଇ ନାହାନ୍ତି ।

## ସଂସାରେ ଥାଇ ମୁଁ ସଦା ଉଦାସୀନ

ବୀରକିଶୋରଙ୍କୁ ସଂସାର ବନ୍ଧନରେ ସିଏ ବାନ୍ଧିଦେଇଗଲା । ସେ କିନ୍ତୁ ପାରିବାରିକ ବନ୍ଧନରେ ଅଟକି ରହିପାରିଲେ ନାହିଁ । ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇସାରିଲା ପରେ ଆଉ ବ୍ୟକ୍ତିଗତ ଜୀବନର ମୋହ ତାଙ୍କ ପାଇଁ ବିଶେଷ ଆକର୍ଷଣୀୟ ନ ଥିଲା । ଚାକିରି ଛାଡ଼ିଲା ପରଠାରୁ ଘର ସହିତ ସେ ସମସ୍ତ ସମ୍ପର୍କ ଏକ ପ୍ରକାର ତୁଟାଇ ଦେଇଥିଲେ । ଓଡ଼ିଶାରେ ଅସହଯୋଗ ଆନ୍ଦୋଳନବେଳେ ମହାତ୍ମା ଗାନ୍ଧୀଙ୍କ ଡାକରେ ଯେଉଁ କେତେଜଣ ବ୍ୟକ୍ତି ସରକାରୀ ଚାକିରି ଛାଡ଼ିଦେଇଥିଲେ, ସେମାନଙ୍କ ମଧ୍ୟରେ ଉଲ୍ଲେଖ ଯୋଗ୍ୟ ଥିଲେ ସେବାପ୍ରାଣ ଗୋପବନ୍ଧୁ ଚୌଧୁରୀ, ବାଲେଶ୍ୱରର ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ ଏବଂ କବି ବୀର କିଶୋର ଦାସ । ତାଙ୍କର ପରମ ସୌଭାଗ୍ୟ ଯେ ଜମିଦାରି ଘରର ଅଲିଅଳି ଝିଅ କବିଙ୍କର ଧର୍ମପତ୍ନୀ ହେଲେହେଁ ଏହି ଦୁଃଖ ଦୁର୍ଦ୍ଦିନରେ ସେ ଥିଲେ ତାଙ୍କର ଉପଯୁକ୍ତ ସହଧର୍ମିଣୀ ଓ ସହକର୍ମିଣୀ । କବିଙ୍କର ପିଲାମାନେ ମାମୁଘରେ କିଛିକାଳ ଆଶ୍ରୟ ଗ୍ରହଣ କଲେ । ଅତ୍ୟନ୍ତ ଅଭାବ ଓ ଅନଟନ ମଧ୍ୟରେ ସେମାନଙ୍କୁ ସ୍କୁଲ, କଲେଜରେ ଅଧ୍ୟୟନ କରିବାକୁ ହେଉଥିଲା । କବିଙ୍କର ଦୁଇଟି ପୁତ୍ର ସନ୍ତାନ ଏବଂ ଗୋଟିଏ କନ୍ୟାସନ୍ତାନ ଥିଲେ । ସେମାନଙ୍କୁ ଯୋଗ୍ୟ କରିବାର ଦାୟିତ୍ୱ ପଡ଼ିଲା କବିପତ୍ନୀଙ୍କ

୧୪ । ଜାତୀୟ କବି ବୀରକିଶୋର ସ୍ମୃତି ସଂସଦ, କଟକ ୧୯୮୫—ପୃ ୧୦-୧୧

ଉପରେ । କବି ବୀରକିଶୋର ବହୁବାର ଜେଲବରଣ କରିବା ଯୋଗୁଁ ଘରୁ ବାହାରେ ରହୁଥିଲେ । ଜେଲରୁ ଫେରି ଆସିଲାପରେ ମଧ୍ୟ ସାଧାରଣ କର୍ମକ୍ଷେତ୍ରରେ ତାଙ୍କର ସମୟ ନିୟୋଜିତ ହେଉଥିଲା । ତେଣୁ ସେ ନିଜର ପିଲାମାନଙ୍କ ପ୍ରତି ସମୟ ଦେବାକୁ ସୁଯୋଗ ପାଉ ନ ଥିଲେ ।

ସେ ଦେଶପାଇଁ ସାତଥର ଜେଲ ଯାଇଥିଲେ । ୧୯୨୨ ସାଲରେ 'ମୋହନବଂଶୀ' କବିତା ପୁସ୍ତକ ଲେଖି ସେ ଇଂରେଜ ସରକାରଙ୍କ ବିଷଦୃଷ୍ଟିରେ ପଡ଼ିଲେ । ତେଣୁ ତାଙ୍କର ବହି ବାଜ୍ୟାପ୍ତ ହୋଇଗଲା ଏବଂ ସେ ଜେଲଦଣ୍ଡ ଭୋଗିବା ପାଇଁ ଚାଲିଗଲେ । ୧୯୩୦ ମସିହାରେ ଗାନ୍ଧିଜୀ ଆଇନ ଅମାନ୍ୟ ଆନ୍ଦୋଳନ ଡାକରା ଦେଲେ ଏବଂ ୧୯୪୨ ସାଲରେ ଭାରତ ଛାଡ଼ ଆନ୍ଦୋଳନରେ ଗାନ୍ଧିଜୀଙ୍କର ଆହ୍ୱାନ ଥିଲା, 'କର ଅବା ମର' । ଭାରତ ଛାଡ଼ ଆନ୍ଦୋଳନ ବେଳେ କବି ଲେଖିଥିଲେ—

'ତୁମେ କେତେଜଣ ଜୀବନକୁ ପାଣି
ଛଡ଼ାଇ ନ ଦେଲେ ଚଳିବ କି ?
ଦଧୀଚିର ହାଡ଼ ଉଜାଡ଼ି ନ ଦେଲେ
ଏ ଜାତିର ଭାଗ୍ୟ ଫେରିବ କି ?'

( ଯବନିକା )

ବାନରସେନାଙ୍କୁ ବ୍ରିଟିଶ ପୋଲିସ ଅତି ନିଷ୍ଠୁର ଭାବେ ଦଣ୍ଡ ଦେଉଥିଲେ । ସେମାନଙ୍କର ଉତ୍ସାହ ଓ ମନୋବଳକୁ ଚାପିଦେବା ପାଇଁ ଯାବତୀୟ ଉଦ୍ୟମ କରାଯାଉଥିଲା । ବୀରକିଶୋରଙ୍କ କଣ୍ଠକୁହରରେ ପ୍ରତିଧ୍ୱନିତ ହେଉଥିଲା ବିପ୍ଳବୀ କବି ନଜରୁଲ୍‌ଙ୍କର ଉଦାରବାଣୀ—

'ଦୁର୍ଗମ ଗିରି କାନ୍ତାର ମରୁ ଦୁସ୍ତର ପାରାବାର ହେ
ଲଙ୍ଘିତେ ହବେ ରାତ୍ରି ନିଶୀଥେ ଯାତ୍ରୀରା ହୁସିଆର ।'

କବି ବୀରକିଶୋର ବାନରସେନାଙ୍କ ତୁଣ୍ଡରେ ଧରାଇଦେଲେ ଏହି ଗୀତଟି—

'ଭାଇ ହେ ! ମାର କେତେ ବେତ ମାରିବ ।
ଦେଶ ଲାଗି ଆମେ ଜୀବନ ଦେଇଛୁ
ତୁମେ କି ଆମକୁ ପାରିବ ?'

ବୀରକିଶୋରଙ୍କ ଗୀତ ବାନରସେନାଙ୍କ ମନରେ ଅପୂର୍ବ ସାହସ ଏବଂ ସହଣିକ ଭାବ ସୃଷ୍ଟି କରୁଥିଲା । ସେମାନେ ହସି ହସି ବେତମାଡ଼ ଖାଇ ହାତ ପାପୁଲିକୁ ରକ୍ତସ୍ନାନ କରି ଦେଉଥିଲେ ପଛକେ, ପଛଘୁଞ୍ଚା ଦେବା ସେମାନଙ୍କର ଜାତକରେ ନ ଥିଲା । ଫଳରେ ନିଷ୍ଠୁର ଇଂରେଜ ସିପାହିମାନେ ମଧ୍ୟ ବିଚଳିତ ହୋଇପଡ଼ୁଥିଲେ । ୧୯୩୦

ମସିହାରେ କବିଙ୍କର 'ରଣଭେରୀ' ଏବଂ 'ରଣଦୁନ୍ଦୁଭି' କବିତା ପୁସ୍ତକ ପ୍ରକାଶିତ ହେଲା । ଏହି ବୈପ୍ଳବିକ କବିତା ପାଇଁ କବିଙ୍କୁ ଦୁଇବର୍ଷ ଜେଲଦଣ୍ଡ ଭୋଗିବାକୁ ପଡ଼ିଥିଲା ଏବଂ ବହି ଦୁଇଟିକୁ ବାଜ୍ୟାପ୍ତ କରିଦିଆଗଲା । ଏହା ବ୍ୟତୀତ କବିଙ୍କର 'ବିଦ୍ରୋହୀ ବୀଣା' (୧୯୩୦), 'ଅରି ଫେରିନାହିଁ ଯୁଦ୍ଧ ସରିନାହିଁ' (୧୯୩୧) କବିତା ଗ୍ରନ୍ଥରେ ବିପ୍ଳବୀ କବି-ଜୀବନର ସାଧନା ସାର୍ଥକ ହୋଇଅଛି । ଏହାଛଡ଼ା 'ଫୁଲଚନ୍ଦନ' (୧୯୩୧), 'ସ୍ମୃତି କଣିକା' ଓ 'ସମରଯୁଗର ଅମର ସଙ୍ଗୀତ' (୧୯୬୨) ପ୍ରଭୃତି କବିତା ଗ୍ରନ୍ଥଗୁଡ଼ିକରେ ଅପୂର୍ବ ଉଦ୍ଦୀପନାମୟ ସଙ୍ଗୀତ ସ୍ଥାନ ଲାଭ କରିଅଛି । ତାଙ୍କର ସଂଗ୍ରାମୀ ଜୀବନରେ କାବ୍ୟସାଧନା ଥିଲା ଏକ ଶକ୍ତିଶାଳୀ ଅସ୍ତ୍ର । ଏଥିପାଇଁ ତାଙ୍କୁ ବାରମ୍ବାର ଜେଲବରଣ କରିବାକୁ ପଡ଼ିଥିଲା ଏବଂ ତାଙ୍କର ଘରକୁ ପୋଲିସ ସତରଥର ଖାନତଲାସ କରିଥିଲା । ୧୯୩୩ ସାଲରେ ବିହାର ଓଡ଼ିଶା ପ୍ରଦେଶର ହଜାରିବାଗ୍ ଜେଲରେ କବିଙ୍କୁ ବନ୍ଦୀ କରାଯାଇଥିଲା । ଏହିଠାରେ କବିଙ୍କର ସହବନ୍ଦୀ ଥିଲେ ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ ଗଫୁର ଖାଁ, ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ, ଓଡ଼ିଶାର ବରେଣ୍ୟ ନେତା ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ଯଦୁମଣି ମଙ୍ଗରାଜ ଓ ନନ୍ଦକିଶୋର ଦାସ । ଭାରତ ଛାଡ଼ ଆନ୍ଦୋଳନବେଳେ କବି ବୀରକିଶୋର ୧୯୪୨ ସାଲରେ ବ୍ରହ୍ମପୁର ଜେଲରେ ଦୀର୍ଘ ତିନିବର୍ଷକାଳ ବନ୍ଦୀ ଜୀବନ ଅତିବାହିତ କରିଥିଲେ ।

ଦେଶ ପାଇଁ କବି ହେଲେ ପାଗଳ । ସାଧାରଣ ମଣିଷ ସିନା ପରିବାରର ସ୍ନେହବନ୍ଧନ ମଧ୍ୟରେ ଉବେଇ ଟୁବେଇ ହେଉଥାଏ, ସଂଗ୍ରାମୀ କବି ବୀରକିଶୋରଙ୍କୁ କେଉଁ ମୋହ ଅବା ଅଟକାଇ ପାରିବ ! ବୀରବାବୁ ନିଜ ଜୀବନର ମାର୍ମିକ ଅନୁଭୂତି ଲେଖିଥିଲେ ଏହିପରି—

"ମାଗୋ, ସବୁରି ବନ୍ଧନ ତୁଟାଇ ଆସିଛି
ଏକା ତୁମରି ବନ୍ଧନେ ରହିକି
ନବତଲ ବାସ ତଳେ ଲୋଟାଉଛି
ତୁମ କୁଟୀର ରଚନା ପାଇଁକି ।
ପାସୋରି ଆସିଛି ଶିଶୁର କ୍ରନ୍ଦନ
ଉପେକ୍ଷି ଆସିଛି ଯୁବତୀ ଯୌବନ
ପର୍ଶୁରାମ ପରି ମାତାଙ୍କୁ ତେଜିଛି
ସତୀ ଗଉରବ ପାଇଁକି ।
ପ୍ରହ୍ଲାଦ ପରି ପିତାଙ୍କର ବୋଲ
ଶୁଣିବା ସକାଶେ ସାଜିଛି ମୁଁ କାଳ
ଭାଇ ଭଉଣୀଙ୍କି ଭୁଲି ଯାଇଅଛି
ତୁମ ସ୍ନେହେ ହୋଇ ବାଉଳ ।"

ସେହି ହେଉଛି ସାର୍ଥକ କବିତା, ଯାହା ବ୍ୟକ୍ତିଗତ ଅନୁଭୂତିରୁ ସାର୍ବଜନୀନ ଅନୁଭୂତିରେ ରୂପାନ୍ତରିତ ହୋଇଯାଏ । ଏହି କବିତାର ମାର୍ମିକ ଅଭିବ୍ୟକ୍ତି କବିଙ୍କର କବିତ୍ୱ ମଧ୍ୟରେ ସୀମିତ ହୋଇ ରହିନାହିଁ । ସତେ ଯେପରିକି ଏହା ସମସ୍ତ ସତ୍ୟାଗ୍ରହୀ ସମାଜର ଜୀବନ ବୀଣାର ଝଙ୍କାର ପରି ପ୍ରତିଧ୍ୱନିତ ହୋଇ ଉଠିଛି । ତେଣୁ ସୁଲେଖକ ଓ ସତ୍ୟାଗ୍ରହୀ ବିନୋଦ କାନୁନଗୋ ଯଥାର୍ଥରେ ଲେଖିଛନ୍ତି—

"ଏହି ଗୀତଟି ବୋଲିଦେଲେ ମନଭିତରେ ଶକ୍ତିର ସଞ୍ଚାର ହେଉଥିଲା ସ୍ୱାଧୀନତା ସଂଗ୍ରାମୀମାନଙ୍କର । ବନ୍ଦୀମାନଙ୍କ ଭିତରେ ଏପରି କେତେକ ଥାଆନ୍ତି, ଯେଉଁମାନେ କି ବିବାହର ଅଠଦିନ ଭିତରେ ଜେଲ ଯାଇଛନ୍ତି । କେହି ବା ସେହି ବନ୍ଦୀଖାନାରେ ଖବର ପାଇଛି ଯେ ଘରେ ଗୋଟିଏ ପୁଅ ହୋଇଛି । ଅଳ୍ପ ବୟସର ବୃଦ୍ଧ ବାପା'ମାଙ୍କ କୋଳ କ ମାନ ଖୁଲିଆସିଛନ୍ତି । ସେମାନଙ୍କ ଭିତରୁ ପ୍ରତ୍ୟେକ ଭାବନ୍ତି ସତେ ଯେପରିକି ଗୀତଟି ତାଙ୍କରି ପାଇଁ ଲେଖାହୋଇଛି ।"(୧୫)

## ସ୍ୱରାଜ୍ୟ ଆଶ୍ରମ ଓ ବୀରକିଶୋର

କଟକର କାଠଯୋଡ଼ି କୂଳରେ ଟ୍ରେନିଂ କଲେଜ ନିକଟରେ ସ୍ୱରାଜ୍ୟ ଆଶ୍ରମ ଏକଦା ସତ୍ୟାଗ୍ରହୀମାନଙ୍କର ପବିତ୍ର ତୀର୍ଥକ୍ଷେତ୍ର ବୋଲି ପରିଗଣିତ ହେଉଥିଲା । ଏହି ଭବନ ସହିତ ସ୍ୱାଧୀନତା ଆନ୍ଦୋଳନକାଳୀନ ବହୁ ସ୍ମୃତି ଜଡ଼ିତ ହୋଇ ରହିଅଛି । ଓଡ଼ିଶାର ନେତା ଓ କର୍ମୀମାନେ ଏହି ଭବନର ପ୍ରାଙ୍ଗଣରେ କଂଗ୍ରେସର ତ୍ରିରଙ୍ଗା ପତାକାତଳେ ବାରମ୍ବାର ସ୍ୱାଧୀନତା ପାଇଁ ଶପଥ ଗ୍ରହଣ କରିଛନ୍ତି ଏବଂ ତାର ମର୍ଯ୍ୟାଦା ରକ୍ଷା ପାଇଁ ବହୁ ତ୍ୟାଗ ଓ ଦୁଃଖ କଷ୍ଟ ସ୍ୱୀକାର କରିଛନ୍ତି ।

ସ୍ୱାଧୀନତା ଲାଭ ପରେ ସ୍ୱରାଜ୍ୟ ଆଶ୍ରମର ପୂର୍ବର ସେ ଐଶ୍ୱର୍ଯ୍ୟ ଓ ଦୀପ୍ତି ଆଉ ନାହିଁ । ତଥାପି ପ୍ରାଚୀନ ଗୌରବମୟ ଅତୀତର ମୂକସାକ୍ଷୀ ଭାବରେ ଏବେ ମଧ୍ୟ ସ୍ୱରାଜ୍ୟ ଆଶ୍ରମ ଦଣ୍ଡାୟମାନ । ଓଡ଼ିଶାର ପ୍ରାକ୍ ସ୍ୱାଧୀନତା କାଳର ପ୍ରତ୍ୟେକ ପ୍ରତିଷ୍ଠିତ ରାଜନୈତିକ ନେତା ଏହି ସ୍ୱରାଜ୍ୟ ଆଶ୍ରମକୁ ନିଜର ମୁଖ୍ୟ କର୍ମସ୍ଥଳୀ ଭାବରେ ଗ୍ରହଣ କରିନେଇଥିଲେ । କିନ୍ତୁ ସ୍ୱରାଜ୍ୟ ଆଶ୍ରମକୁ କଂଗ୍ରେସର ମୁଖ୍ୟ କାର୍ଯ୍ୟାଳୟ କରିବାରେ ବୀରବାବୁଙ୍କର ଭୂମିକା ଥିଲା ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ । ଏହି ବିଷୟରେ ଶ୍ରୀ ସଚ୍ଚିଦାନନ୍ଦ କାନୁନ୍‌ଗୋ 'ଓଡ଼ିଆ ରାଜନୀତିର ବିବର୍ତ୍ତନ' ଶୀର୍ଷକ ଏକ ପ୍ରବନ୍ଧରେ ଲେଖିଥିଲେ—

"ଓଡ଼ିଶାରେ କଂଗ୍ରେସ ଦଳ ଶାସନ କ୍ଷମତାରେ ଥିଲେ ବି କଂଗ୍ରେସ ଦଳର ନିଜର ଗୋଟିଏ ଘର ନଥିଲା । ପ୍ରଦେଶ କଂଗ୍ରେସର ନିଜର ଗୋଟିଏ ଘର କରିବା ପାଇଁ ଏହି ତିନିଜଣ ନେତା ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ କାନୁନ୍‌ଗୋ, ଭାଗୀରଥି

---

୧୫ । ଜାଗ୍ରତ ବିପ୍ଳବୀ ବୀରକିଶୋର—ବିନୋଦ କାନୁନଗୋ—୧୯୬୭—ପୃ. ୯୧

ମହାପାତ୍ର ଗୋଟିଏ ଯୋଜନା ଆରମ୍ଭ କଲେ । ବହୁ ଆଲୋଚନା ପରେ ବର୍ତ୍ତମାନର ସ୍ୱରାଜ୍ୟ ଆଶ୍ରମଟି କିଣିବାକୁ ନିଷ୍ପତ୍ତି ହେଲା । ହେଲେ ଏଥିପାଇଁ ଟଙ୍କା ପଇସାର ଅଭାବ ଏକ ବଡ଼ ସମସ୍ୟା ରୂପେ ଦେଖାଦେଲା । ତେଣୁ ଶସ୍ତାରେ କିପରି ସେ କୋଠାଟି କିଣାଯାଇ ପାରିବ, ସେଥିପାଇଁ ପରାମର୍ଶ ଚାଲିଲା । ସେତେବେଳେ ଏ ସମ୍ପତ୍ତିର ମାଲିକ ନଳିନୀକାନ୍ତ ଘୋଷ, ଡେପୁଟି ମାଜିଷ୍ଟ୍ରେଟ୍ । କଂଗ୍ରେସ ଅନୁଷ୍ଠାନର ଟଙ୍କା ପଇସା ତ କିଛି ନ ଥିଲା । ତେଣୁ ଶସ୍ତାରେ ଏହି କୋଠାଟି କିପରି କିଣାଯାଇପାରିବ, ସେଥିପାଇଁ କଥାବାର୍ତ୍ତା କରିବାକୁ ଜାତୀୟ କବି ବୀରକିଶୋର ଦାସଙ୍କୁ ଦାୟିତ୍ୱ ଦିଆଗଲା । ବୀରବାବୁ ବହୁ ଚେଷ୍ଟା କରି ଦଶହଜାର ଟଙ୍କାରେ ସେ ସମ୍ପତ୍ତିକୁ ବିକିବା ପାଇଁ ନଳିନୀବାବୁଙ୍କୁ ରାଜି କରାଇଲେ । କିନ୍ତୁ ଦଶହଜାର ଟଙ୍କା କେଉଁଠୁ ଆସିବ ତାହା ଏକ ବଡ଼ ପ୍ରଶ୍ନ ହେଲା । ସେହି ବୀରବାବୁଙ୍କ ଉଦ୍ୟମରେ ଶ୍ରୀ ଗାଙ୍ଗବିଜୟୀ ଏକାଥରକେ ପାଞ୍ଚହଜାର ଟଙ୍କା ଦେଲେ । ବର୍ତ୍ତମାନ ହୁଏତ ପାଞ୍ଚହଜାର ଟଙ୍କାର କିଛି ମୂଲ୍ୟ ନଥାଇ ପାରେ । କିନ୍ତୁ ସେତେବେଳେ ? ଜଣେ ବ୍ୟକ୍ତିଙ୍କଠାରୁ ଏକକାଳୀନ ପାଞ୍ଚହଜାର ଟଙ୍କା ପାଇବା ସେତେବେଳେ ଦୁଃସ୍ୱପ୍ନ ଥିଲା । କିନ୍ତୁ ବୀରବାବୁଙ୍କ ପ୍ରଚେଷ୍ଟା ଯୋଗୁଁ ତାହା ସମ୍ଭବ ହୋଇଥିଲା ।"(୧୨)

## ସାମ୍ବାଦିକ ଓ ସମ୍ପାଦକ ବୀରକିଶୋର

କବି ବୀରକିଶୋର ସ୍ୱପ୍ନଜୀବୀ ନ ଥିଲେ । କଳ୍ପନାର ପକ୍ଷୀମଣ୍ଡଳରେ ପର ଲଗାଇ ଉଡ଼ୁଥିବା ତାଙ୍କୁ କେହି ଦେଖିନାହିଁ । ସେ ଥିଲେ ପ୍ରଥମରୁ ବିପ୍ଳବୀ । ଲେଖନୀର ଶକ୍ତି କି ଅଦ୍ଭୁତ ଓ ଅପରାଜେୟ, ତାହା ବୀରକିଶୋରଙ୍କ ସାଧନାରୁ ପ୍ରମାଣିତ ହୋଇପାରିଥିଲା । ପରାଧୀନ ଭାରତରେ ଓଡ଼ିଶା କେବଳ ଅନଗ୍ରସର ନ ଥିଲା । ଶିକ୍ଷା ଓ ସଚେତନତାଠାରୁ ମଧ୍ୟ ବହୁତ ଦୂରରେ ଥିଲା । ଏହି ଜନ୍ତୁରଙ୍ଗ ଜାତୀୟ ଜୀବନରେ ଉଗ୍ର ଦେଶାତ୍ମବୋଧ ଏବଂ ମରଣବିଜୟୀ ଭାବନା ସଞ୍ଚାର କରିବାରେ ବୀରବାବୁଙ୍କର ଲେଖନୀ ଯାଦୁକରୀ ପ୍ରଭାବ ଆଣିପାରିଥିଲା ବୋଲି ଜାତୀୟ ଆନ୍ଦୋଳନର ନେତା ଓ କର୍ମୀମାନେ ସ୍ୱୀକାର କରିଥାନ୍ତି । ସେଥିପାଇଁ ଇଂରେଜ ସରକାର ଆତଙ୍କିତ ହୋଇ ତାଙ୍କର କାବ୍ୟ ପୁସ୍ତକଗୁଡ଼ିକୁ ବାଜ୍ୟାପ୍ତ କରିବା ଏବଂ କବିଙ୍କୁ ବର୍ଷ ବର୍ଷ ଧରି କାରାଦଣ୍ଡ ଦେବା ତାଙ୍କ କାବ୍ୟ-ସାଧନାର ସର୍ବଶ୍ରେଷ୍ଠ ପୁରସ୍କାର ବୋଲି ସେ ଅନୁଭବ କରୁଥିଲେ ।

କେବଳ କବିତା ନୁହେଁ, ସାମ୍ବାଦିକତା କରିଆରେ ମଧ୍ୟ କବିଙ୍କ ଲେଖନୀ ବିପ୍ଳବ ସୃଷ୍ଟି ପାଇଁ ବ୍ୟଗ୍ର ହୋଇ ଉଠିଥିଲା । ବିଂଶ ଶତକର ତୃତୀୟ ଦଶକରେ ସ୍ୱାଧୀନତା ଆନ୍ଦୋଳନକୁ ଅଧିକ ତ୍ୱରାନ୍ୱିତ କରିବା ପାଇଁ ଏହି ସଂଗ୍ରାମର ଅନ୍ୟତମ ସେନାପତି ହରେକୃଷ୍ଣ ମହତାବ 'ସାପ୍ତାହିକ ପ୍ରଜାତନ୍ତ୍ର' ପ୍ରକାଶ କଲେ । ଏହି ପତ୍ରିକାର ଜନ୍ମବେଳାରୁ

୧୨ । ଅନୁସନ୍ଧାନ—ଭୁବନେଶ୍ୱର—୭ । ୫ । ୧୯୯୦

ଏହା ସହିତ ବୀରକିଶୋରଙ୍କର ଭୂମିକା ଥିଲା ଅତ୍ୟନ୍ତ ଘନିଷ୍ଠ । ସେକାଳରେ ଅସହଯୋଗ ଆନ୍ଦୋଳନର ଏହା ମୁଖପତ୍ର ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । 'ପ୍ରଜାତନ୍ତ୍ର' ପ୍ରଥମେ କଟକରୁ ପ୍ରକାଶିତ ହୋଇ ପରେ ବାଲେଶ୍ୱରରୁ ପ୍ରକାଶ ଲାଭ କରିବା ସମୟରେ ଇଂରେଜ ସରକାରଙ୍କ କୋପଦୃଷ୍ଟିରେ ପଡ଼ିଲା ଏବଂ ୧୯୩୩ ସାଲରେ ସରକାର ଅତ୍ୟନ୍ତ କଠୋର ଭାବରେ ଦମନ କରିବା ପାଇଁ 'ପ୍ରଜାତନ୍ତ୍ର'କୁ ବାଜ୍ୟାପ୍ତ କରି ପ୍ରେସ ବନ୍ଦ କରିଦେଲେ । ଫଳରେ ଦେଶ ସ୍ୱାଧୀନ ନ ହେବାଯାଏଁ ପ୍ରଜାତନ୍ତ୍ର ବାହାରି-ପାରିଲା ନାହିଁ । ସୁଖର କଥା ଯେ ସ୍ୱାଧୀନତା ପ୍ରାପ୍ତି ପରେ ୧୯୪୮ ସାଲରୁ ପ୍ରଜାତନ୍ତ୍ର ଏକ ଶକ୍ତିଶାଳୀ ଦୈନିକ ହିସାବରେ ଆତ୍ମପ୍ରକାଶ କରି ଆସୁଅଛି । ପ୍ରଜାତନ୍ତ୍ର ପ୍ରକାଶନ ଓ ବୀରବାବୁଙ୍କ ଅବଦାନକୁ ଉଲ୍ଲେଖ କରି ଶ୍ରୀ ହରେକୃଷ୍ଣ ମହତାବ ଏହିପରି ସ୍ମୃତିଚାରଣ କରିଛନ୍ତି—

"ବୀରକିଶୋରଙ୍କ ସହ ମୋର ପରିଚୟ ୧୯୨୩ ଖ୍ରୀଷ୍ଟାବ୍ଦରେ । ମୁଁ ଜେଲରୁ ଫେରି ଏକ ସାପ୍ତାହିକ ପତ୍ରିକା ପ୍ରକାଶନ କରିବା ପାଇଁ ଉଦ୍ୟମ କଲି । ପତ୍ରିକାର ନାମ ଦିଆଯାଇଥିଲା 'ପ୍ରଜାତନ୍ତ୍ର' । ଆଜି ଯେଉଁ ଦୈନିକ 'ପ୍ରଜାତନ୍ତ୍ର' ପ୍ରକାଶିତ ହେଉଛି, ତାହାର ଆରମ୍ଭ ସେହି ସମୟରେ । ମୁଁ ଥିଲି ଏହାର ସମ୍ପାଦକ ଓ ବୀରକିଶୋର ଥିଲେ ପ୍ରକାଶକ । ପତ୍ରିକାଟି ଫୁଲସ୍କେପ୍ ସାଇଜର ଚାରିପୃଷ୍ଠା ମାତ୍ର । ତତ୍କାଳୀନ ମୁକୁର ପ୍ରେସରେ ଏହା ମୁଦ୍ରିତ ହେଉଥିଲା । ଲେଖିବା ବାହୁଲ୍ୟ ଯେ ଏହି ପତ୍ରିକାଟି ଅସହଯୋଗ ଆନ୍ଦୋଳନର ପ୍ରଚାର ଉଦ୍ଦେଶ୍ୟରେ ହିଁ ପ୍ରକାଶିତ ହୋଇଥିଲା । × × × ଏ ଇତିହାସ ସହିତ ମୁଁ ଓ ବୀରବାବୁ ଏପରି ଜଡ଼ିତ ଥିଲୁ ଯେ 'ପ୍ରଜାତନ୍ତ୍ର' କହିଲେ ବୀରବାବୁ ମୋର ମନେପଡ଼ିଯାଆନ୍ତି । ସେ ସମୟରେ ଯୁବାବସ୍ଥାରେ କାରାବରଣ କି କଷ୍ଟଦାୟକ ଆମ୍ଭେ ଦୁହେଁ ଉପଲବ୍ଧି କରିଥିଲୁ । ପରବର୍ତ୍ତୀ ଜୀବନରେ ସେ ସମୟର କଥା ମନେପକାଇଲେ ଆଖିରୁ ଲୁହ ଆସିଯାଏ । ବୀରବାବୁ ସେ ସମୟରେ ଚରମ ଆର୍ଥିକ ଦୁର୍ଗତି ଭୋଗିଥିଲେ । [1]"

ବୀରବାବୁ ହସି ହସି ଜେଲବରଣ କରିଥିଲେ ଏବଂ ବିଦେଶୀ ଶାସନର ଅତ୍ୟାଚାର ଥିଲା ତାଙ୍କ ପାଇଁ ଏକ ମହାନ୍ ପରୀକ୍ଷା । ସେ ହାରିଯିବାର ବ୍ୟକ୍ତି ନ ଥିଲେ । ଜେଲ ଭିତରେ ମଧ୍ୟ ତାଙ୍କର ଲେଖନୀ ନୀରବ ରହିପାରୁ ନ ଥିଲା । କେବଳ ଜ୍ୱାଳାମୟୀ କବିତା ରଚନା କରି ସେ ଜେଲର ଅନ୍ତେବାସୀମାନଙ୍କୁ ଜାଗ୍ରତ କରୁ ନ ଥିଲେ, 'ହାତଲେଖା' ପତ୍ରିକା ସମ୍ପାଦନ କରି ସତ୍ୟାଗ୍ରହୀ ଭାବନାକୁ ଉଜ୍ଜୀବିତ କରି ରଖୁଥିଲେ । ବ୍ରହ୍ମପୁର ଜେଲରେ ବନ୍ଦୀ ଥିବାବେଳେ ବୀରବାବୁ ସମ୍ପାଦନା କଲେ 'ବୈଜୟନ୍ତୀ' ହସ୍ତଲେଖା

---

୧ । ବିପ୍ଳବର ବାର୍ତ୍ତାବହ ଜାତୀୟ କବି ବୀରକିଶୋର—ଜାତୀୟ କବି ବୀରକିଶୋର ସ୍ମୃତି ସଂସଦ, କଟକ—୧୯୮୦—ପୃ ୧-୨

ପତ୍ରିକା । ସ୍ୱଭାବର କାଗଜଗୁଡ଼ିକରେ ବହୁ ଅମୂଲ୍ୟ ସାହିତ୍ୟ ଲେଖାଯାଇଥିଲା । ଅତ୍ୟନ୍ତ ଦୁର୍ଭାଗ୍ୟର କଥା ଯେ 'ବୈଜୟନ୍ତୀ ପତ୍ରିକା'ର କେବଳ ଐତିହାସିକ ମୂଲ୍ୟ ସ୍ୱୀକୃତ ହେଲେହେଁ ଭବିଷ୍ୟତରେ ଏହାର ସାହିତ୍ୟିକ ଐଶ୍ୱର୍ଯ୍ୟ ନିର୍ଦ୍ଧାରଣ ପାଇଁ ଏହି ପତ୍ରିକା ସଂଗ୍ରହ କରାଯାଇ ରାଜ୍ୟ ସଂଗ୍ରହାଳୟରେ ରହିବା ବାଞ୍ଛନୀୟ ।

ବୀରବାବୁ ଥିଲେ ଏହି ପତ୍ରିକାର ସମ୍ପାଦକ ଥିଲେ । ସମ୍ପାଦନାରେ ସହଯୋଗ କରୁଥିଲେ ଜେଲ ଜୀବନର ସାଥୀ ରାମପ୍ରସାଦ ମହାନ୍ତି, ବିଶ୍ୱମ୍ଭର ପଣ୍ଡା ଏବଂ ବୈକୁଣ୍ଠ ନାଥ ମହାନ୍ତି । ପରବର୍ତ୍ତୀ କାଳରେ ଏମାନେ ସମସ୍ତେ ସୁପ୍ରତିଷ୍ଠିତ । ଜେଲ ଜୀବନର ସାଥୀ ବିଶ୍ୱମ୍ଭର ପଣ୍ଡା ବୀରବାବୁଙ୍କୁ ମନେପକାଇ ଲେଖିଛନ୍ତି ଯେ ଦୀର୍ଘକାଳ ଜେଲରେ ରହିବାବେଳେ ଜେଲ ଜୀବନକୁ ସରସ କରିବା ପାଇଁ, ଜାତୀୟ ସାହିତ୍ୟ ରଚନା କରିବା ପାଇଁ, କର୍ମୀ ସୃଷ୍ଟି କରିବା ଦିଗରେ ଜାତୀୟ କବି ବୀରକିଶୋରଙ୍କ ଅବଦାନ ଅନବଦ୍ୟ— ଏହା କେହି ଅସ୍ୱୀକାର କରି ନ ପାରନ୍ତି । ତାଙ୍କ ରଚିତ ସଙ୍ଗୀତ ସାମୟିକ ମୂଲ୍ୟବୋଧ ମଧ୍ୟରେ ପର୍ଯ୍ୟବସିତ ହୋଇ ରହିନାହିଁ । ସେ ସବୁର ଚିରନ୍ତନ ମୂଲ୍ୟବୋଧ ରହିଛି । [୧୮]

ସ୍ୱାଧୀନତା ପ୍ରାପ୍ତି ପରେ ବୀରକିଶୋର ନୀରବ ହୋଇ ଯାଇ ନ ଥିଲେ । ସେ ଅନୁଭବ କରୁଥିଲେ ଯେ ଏ ଦେଶରେ ଶିଶୁମାନଙ୍କ ପାଇଁ ଉଚିତ ପତ୍ରିକାଟିଏ ନାହିଁ । ଶିଶୁ ସାହିତ୍ୟର ଉନ୍ନତି ପାଇଁ ସେ ସମ୍ପାଦନା କଲେ 'ମୋ ଦେଶ' । ତାଙ୍କର ପ୍ରେରଣା ଲାଭ କରି ଶିଶୁସାହିତ୍ୟ ରଚନାରେ ବହୁ ଲେଖକ ସଫଳତା ଅର୍ଜନ କଲେ । 'ମୋ ଦେଶ' ଏବେ ଇତିହାସରେ ପରିଣତ ହୋଇଥିଲେ ହେଁ ଶିଶୁସାହିତ୍ୟ ପତ୍ରିକା ଭାବରେ ତାର ସ୍ଥାନ ଅପୂରଣୀୟ ହୋଇ ରହିଅଛି । ଓଡ଼ିଶା ସରକାର ପାଠ୍ୟପୁସ୍ତକ ଜାତୀୟକରଣ କରି ତାହାର ସୁପରିଚାଳନା ପାଇଁ ବୀରବାବୁଙ୍କୁ ଦାୟିତ୍ୱ ଦେଇଥିଲେ ଏବଂ ଶିଶୁସାହିତ୍ୟର ବିକାଶ ମଧ୍ୟ ଏହି ଅନୁଷ୍ଠାନର ଆଉ ଏକ ପ୍ରଧାନ ଲକ୍ଷ୍ୟ ଥିଲା ।

## ଉଚ୍ଚ ମାନବିକ ମୂଲ୍ୟବୋଧ ଓ ବୀରକିଶୋର

ବୀରକିଶୋର ଜଣେ ପ୍ରଥମ ଶ୍ରେଣୀର ରାଜନୈତିକ ନେତା ଥିଲେ । କଟକ ସଦର ଲୋକାଲବୋର୍ଡ଼ର ଚେଆରମ୍ୟାନ୍ ଭାବରେ ବହୁ ବର୍ଷ କାର୍ଯ୍ୟ କରି ସେ ଜନ-ସାଧାରଣଙ୍କର ଅଶେଷ ସେବା କରିଯାଇଅଛନ୍ତି । ୧୯୫୧ ମସିହାରେ ସେ ଓଡ଼ିଶା ବିଧାନସଭାକୁ ମଧ୍ୟ ନିର୍ବାଚିତ ହୋଇଥିଲେ । ଉଚ୍ଚ ଆଦର୍ଶ, ତ୍ୟାଗପୂତ ଜୀବନ ଏବଂ ମୂଲ୍ୟବୋଧଭିତ୍ତିକ ରାଜନୀତି ମଧ୍ୟରେ ସେ ବହୁବର୍ଷ ସରକାରୀ କ୍ଷମତା ଉପଭୋଗ କରିଥିଲେ ହେଁ ନିଜର ସ୍ୱାର୍ଥ ପାଇଁ କୌଣସି ବୈଷୟିକ ଲାଭ ଉଠାଇ ନ ଥିଲେ । ସେଥିପାଇଁ ସାରାଜୀବନ ସେ ଅର୍ଥାଭାବରେ ଦୁଃଖ ପାଇଛନ୍ତି ଏବଂ ନିଜର ପରିବାରକୁ ମଧ୍ୟ ଏହି ପୀଡ଼ାରୁ ରକ୍ଷା କରିପାରି ନାହାନ୍ତି ।

---

୧୮ । ଜାତୀୟ କବି ବୀରକିଶୋର ସ୍ମୃତି ସଂସଦ, କଟକ ୧୯୮୫—ପୃ ୩୬

ବୀରକିଶୋର ଥିଲେ ଅତ୍ୟନ୍ତ ସ୍ନେହଶୀଳ ଏବଂ ବନ୍ଧୁବତ୍ସଳ । ନିଜର ଅଧସ୍ତନମାନଙ୍କୁ ସେ କେବେହେଲେ ଅନାଦର କରୁ ନ ଥିଲେ । ବରଂ ସେମାନଙ୍କୁ ଆପଣା ପରିବାରର ଲୋକ ଭଳି ଦେଖୁଥିଲେ । କାହାରି ଦୁଃଖ ଦେଖିଲେ ତାଙ୍କର ପ୍ରାଣ କାନ୍ଦି ଉଠୁଥିଲା । ନିଜର ଶତ ଅଭାବ ଥିଲେ ହେଁ ଅନ୍ୟର ଦୁଃଖ ମୋଚନ ପାଇଁ ସେ କୌଣସି ପ୍ରକାର ବିପଦକୁ ବରଣ କରିବା ଲାଗି ସେ ଆଦୌ କୁଣ୍ଠିତ ହେଉ ନ ଥିଲେ । ନିଜର ଆୟର କୌଣସି ପନ୍ଥା ଯେତେବେଳେ ନ ଥିଲା, ସେତେବେଳେ କେହି ଅଭାବୀ ଲୋକ ତାଙ୍କର ଦ୍ୱାରସ୍ଥ ହେଲେ ସେ ସାହୁର ଦୋକାନରୁ ଚାଉଳ, ଚିନି, ପରିବା ଧାର କରି ଗରିବଙ୍କୁ ସାହାଯ୍ୟ କରୁଥିଲେ । ଏଥିପାଇଁ ସେ ବହୁବାର ଧାର ଠିକ୍ ସମୟରେ ସୁଝି ନ ପାରି ଅପମାନିତ ଅଥବା ଅପଦସ୍ଥ ହୋଇଛନ୍ତି । କିନ୍ତୁ ସାହାଯ୍ୟଦାନରୁ ତାଙ୍କୁ କେହି ବିରତ କରିପାରି ନାହାନ୍ତି । ଏକଦା ଜଣେ ଗରିବ ପିଅନ ଝିଅର ବାହାଘର ଅର୍ଥାଭାବରୁ ଅଟକିଯିବା ଉପରେ । ଦରଦୀହୃଦୟ ବୀରକିଶୋର ଏହା ସହ୍ୟ କରନ୍ତେ କିପରି ? ଅତି ନିଷ୍ଠୁର କାବୁଲି ମହାଜନଠାରୁ ଟଙ୍କା କରଜ ଆଣି ସେ ପିଅନର ଝିଅ ବାହାଘର କରିଦେଇଥିଲେ । ପରେ ବହୁବର୍ଷ ପର୍ଯ୍ୟନ୍ତ ସେ ଋଣ ପରିଶୋଧ କରିବା ପାଇଁ ସେ ସମର୍ଥ ହେଲେ ନାହିଁ । ତେଣୁ ତାଙ୍କ ଦୁଆରେ କାବୁଲିବାଲା ଠେଙ୍ଗା ଧରି ବସି ତାଙ୍କୁ ଅପଦସ୍ଥ କରିବା ମଧ୍ୟ ଦେଖାଯାଇଥିଲା । ଯେଉଁମାନେ ତାଙ୍କଦ୍ୱାରା ବହୁ ଭାବରେ ଉପକୃତ ହୋଇ ସୁଖୀ ଓ ସମୃଦ୍ଧ ଜୀବନ ଯାପନ କରିଥିଲେ, କେହି ଦିନକ ପାଇଁ ତାଙ୍କର ସାହାଯ୍ୟରେ ଆସି ନ ଥିଲେ । ଏହିପରି ନାନା ଘାତପ୍ରତିଘାତ ମଧ୍ୟରେ ତାଙ୍କର ଜୀବନ ବିତିଯାଇଥିଲା । ଆଉ ଦିନକର ଘଟଣା । ବୀରକିଶୋରଙ୍କ ଜନ୍ମଦିନରେ ପରିବାରର ଲୋକେ ତାଙ୍କ ପାଇଁ ନୂଆ ଖଦଡ଼ ଲୁଗା ଓ ଦୋସଡ଼ା କିଣିଦେଇଥାନ୍ତି । କବି ନିଜର ବସାଘରେ ବିଶ୍ରାମ କରୁଥାଆନ୍ତି । ରାତିରେ କେହି ଦୁଃଖୀ ଲୋକ ତାଙ୍କର ଶରଣାପନ୍ନ ହେଲା । ସେ ନିଜର ଲୁଗା ଓ ଦୋସଡ଼ା ତାକୁ ଦାନ କରି ସମଗ୍ର ଶୀତ ରାତି ଗାମୁଛା ପିନ୍ଧି ବିତାଇଲେ ଏବଂ ପରଦିନ ସକାଳୁ ଧୋବାଘରୁ ସଫା ଲୁଗା ମଗାଇ ପିନ୍ଧିଲା ପରେ ଘରକୁ ଭୋଜନ କରିବା ପାଇଁ ଆସିଲେ । ସେ ଡାହାଣ ହାତରେ ଯାହା ଦାନ କରୁଥିଲେ, ତାହା ତାଙ୍କର ବାମ ହାତ ଜାଣିପାରୁ ନ ଥିଲା । ତାଙ୍କର ଏପରି ଆଚରଣରେ ପରିବାରର ଲୋକେ ଆଚମ୍ବିତ ହୋଇଯାଉଥିଲେ । କିନ୍ତୁ ଦରଦୀ ବୀରବାବୁଙ୍କର ହୃଦୟ ଥିଲା ଅତ୍ୟନ୍ତ ମହାନ୍ । ସେ ଥିଲେ ପ୍ରକୃତ ପକ୍ଷେ ଦୁଃଖୀ ଲୋକମାନଙ୍କର ଅନ୍ତରଙ୍ଗ ବନ୍ଧୁ ।

ବୀରବାବୁଙ୍କର ଅଗ୍ନିଗର୍ଭ କବିତା ଇଂରେଜ ସରକାରଙ୍କୁ ସର୍ବଦା ଆତଙ୍କିତ କରୁଥିଲା ବୋଲି ପୂର୍ବରୁ କୁହାଯାଇଛି । ବଡ଼ ବଡ଼ ନେତାମାନଙ୍କର ଭାଷଣ ଯେତେ ପ୍ରଭାବଶାଳୀ ନ ଥିଲା, କବିଙ୍କର ବୈପ୍ଳବିକ ସଙ୍ଗୀତର ପ୍ରଭାବ ଥିଲା ତହିଁରୁ ଅଧିକ, ଭୟଙ୍କର ଓ ବ୍ୟାପକ । ସେହି ସଙ୍ଗୀତ ଗାଇ ଲୋକେ ବିପ୍ଳବ ପାଇଁ ପାଗଳ ଭଳି ମାତି ଉଠୁଥିଲେ । ସେଥିପାଇଁ ବୀରବାବୁଙ୍କ ଲେଖନୀକୁ ଦମନ କରିବା ପାଇଁ ଇଂରେଜ ଶାସନ ଅବିରତ

ସଂଗ୍ରାମ ଚଳାଇଥିଲେ । ତାଙ୍କର ପ୍ରକାଶିତ ପୁସ୍ତକ କେବଳ ବାଜ୍ୟାପ୍ତ କରାଯାଉ ନ ଥିଲା । ଏଥିପାଇଁ ତାଙ୍କୁ ବହୁ ବର୍ଷ ଜେଲଦଣ୍ଡ ମଧ୍ୟ ଭୋଗ କରିବାକୁ ପଡ଼ିଥିଲା । ତାଙ୍କର ଘରକୁ ବାରମ୍ବାର ଇଂରେଜ ପୋଲିସ୍ ଖାନତଲାସ କରି କିଛି ପାଉ ନ ଥିଲେ ହେଁ ତଲାସ ଲାଗି ରହିଥିଲା । ଶେଷରେ ଜଣେ ପୋଲିସ ହତାଶ ହୋଇ କହିପକାଇଲା—"କୁଛ ନହିଁ ମିଲତା—ନୌକରୀ ଚଲି ଯାଏଗୀ ।" ବୀରବାବୁଙ୍କର କାନରେ ଏ କଥା ପଡ଼ିଲା । ବିଚରା କେତେ ଆଶା କରି ଆସି ବିଫଳମନୋରଥ ହୋଇ ଫେରିଯାଉଛି । ପୁନଶ୍ଚ ଚାକିରିରେ ମଧ୍ୟ ଦୁଃଖ ପାଇବ । ସେ ଜାଣିଥିଲେ, ତାଙ୍କର କବିତା ଧରାପଡ଼ିଲେ ତାଙ୍କୁ ଜେଲଦଣ୍ଡ ନିଶ୍ଚୟ ହେବ । ତଥାପି ସେ ପୋଲିସକୁ ଡାକି ବତାଇଦେଲେ—"କବିତା ଲେଖାଯାଇ ଖଡ଼ ଉପରେ କନା ଗୁଡ଼ା ହୋଇ ଥୁଆ ହୋଇଛି ।" ଇଂରେଜ ପୋଲିସ କବିତାକୁ ଜବତ୍ କଲେ ଏବଂ ସେଥିପାଇଁ ବୀରକିଶୋରଙ୍କୁ ପୁନର୍ବାର ଜେଲଦଣ୍ଡ ଭୋଗିବାକୁ ହେଲା । କିନ୍ତୁ ଏପଟେ ପରିଣାମରେ କର୍ତ୍ତବ୍ୟରତ ପୋଲିସ୍‌ର ପ୍ରମୋସନ୍ ହୋଇଥିଲା ।

ଜାତୀୟ କବି ବୀରକିଶୋରଙ୍କ ରହସ୍ୟପ୍ରିୟତା କିପରି ତାଙ୍କ କଥା, କାର୍ଯ୍ୟ ଓ ରଚନାରେ ପରିସ୍ଫୁଟ ହୋଇଥିଲା, ତାର ବହୁ ପ୍ରମାଣ ରହିଛି । ମନେହୁଏ ଯେପରିକି ଏହି ଗୁଣଟି ଥିଲା ତାଙ୍କର ପ୍ରକୃତିଗତ । ଜୀବନର କୌଣସି ଘାତପ୍ରତିଘାତ ଏହାକୁ ବଦଳାଇ-ପାରି ନ ଥିଲା । ଏ ବିଷୟରେ ତାଙ୍କର ଘନିଷ୍ଠ ସମ୍ପର୍କରେ ଆସିଥିବା ଶିଶୁସାହିତ୍ୟିକ ରାମକୃଷ୍ଣ ନନ୍ଦଙ୍କର କେତୋଟି ଅନୁଭୂତି ଏଠାରେ ଉଦ୍ଧାର କଲେ ଅପ୍ରାସଙ୍ଗିକ ହେବ ନାହିଁ ।

ପୂର୍ବରୁ ଚିନ୍ତା ନ କରି ତାତ୍କାଳିକ ଶବ୍ଦଖେଳ ଦ୍ୱାରା କୌତୁକ ସୃଷ୍ଟି କରିବା ଏକ କଳା । ସ୍ୱର୍ଗତ ବୀରକିଶୋର ଦାସ ଓଡ଼ିଆ ଜାତୀୟ କବି ରୂପେ ସର୍ବଜନ ପରିଚିତ; ମାତ୍ର କଥାବାର୍ତ୍ତା ମଝିରେ ଶବ୍ଦର କୁହୁକ ଦେଖାଇ ଶ୍ରୋତାମାନଙ୍କୁ ସେ ଯେପରି ଆନନ୍ଦ ଦେଉଥିଲେ, ତାହା ବୋଧହୁଏ ଅନେକ ଜାଣି ନ ଥିବେ ।

ଅସହଯୋଗ ଆନ୍ଦୋଳନ ବେଳେ କେହି ଜଣେ କହିଲେ, "ସ୍କୁଲ କଲେଜ ଛାଡ଼ି ସ୍ୱରାଜ୍ୟାଶ୍ରମକୁ କେତେ ଯୁବକ ଆସୁଛନ୍ତି !" ତାହା ଶୁଣି ସେ ସାଙ୍ଗେ ସାଙ୍ଗେ କହିଲେ, "କି ଯୁବକ ସେମାନେ ? ଯୁ' ଅଛି ନା ଯୁ' ନାହିଁ ? ଯୁ ନ ଥିଲେ ସମସ୍ତେ ବକ ପାଲଟିଯିବେ ।"

ରାଜ୍ୟ ବିଧାନ ସଭାକୁ ପ୍ରାର୍ଥୀ ହୋଇ ସେ ଭୋଟ ପ୍ରଚାରରେ ବୁଲୁଥିଲେ । ଏହି ସମୟରେ ଦିନେ ତାଙ୍କ ସଙ୍ଗେ ଦେଖା ହେବାରୁ ଲେଖକ ତାଙ୍କୁ ପଚାରିଲେ, "କଣ ଭୋଟ ଅଭିଯାନରେ ବାହାରିଲେ ?"

ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, "ଯାନ ତ ନାହିଁ । ଅଭିଯାନ କ'ଣ କରିବ ?" ଜିପ୍ ଗାଡ଼ି ନ ଥିବାରୁ ପ୍ରଚାର କାର୍ଯ୍ୟରେ ଅସୁବିଧା ହେଉଛି—ଏହାହିଁ ଥିଲା ତାଙ୍କ କଥାର ମର୍ମ ।

ଆଉ ଦିନକର କଥା । ସେ ପାଠ୍ୟ ପୁସ୍ତକର ଜାତୀୟକରଣ କାର୍ଯ୍ୟର ଦାୟିତ୍ୱ ନେଇଥାନ୍ତି । ଆଲୋଚନାବେଳେ କଥା ପଡ଼ିଲା କିଏ କିଏ ପାଠ୍ୟପୁସ୍ତକର ଲେଖକ ହେବେ ? ସେ ତତ୍‌କ୍ଷଣାତ୍ ମନ୍ତବ୍ୟ ଦେଲେ, ''ଖାଲି ଲେଖକ ନୁହେଁ, 'ଦେଖକ' କିଏ ହେବେ ତା ମଧ୍ୟ ଠିକ୍ କର ।'' ସମୀକ୍ଷକ ଅର୍ଥରେ 'ଦେଖକ'ର ପ୍ରୟୋଗ ସେଦିନ ବେଶ୍ ହାସ୍ୟୋଦ୍ଦୀପକ ହୋଇଥିଲା ।

ଏହି ତାତ୍‌କାଳିକ ଶବ୍ଦ-ଗଠନ ପ୍ରକ୍ରିୟା ଯେ ଏକ ଜନ୍ମଗତ କଳା ଏପରି ବିଶ୍ୱାସିବାର ଯଥେଷ୍ଟ କାରଣ ଅଛି । ଏହା ସାଧାରଣତଃ ହାସ୍ୟାମୋଦୀ ବ୍ୟକ୍ତିମାନଙ୍କର ଏକ ପ୍ରତ୍ୟୁତ୍ପନ୍ନ ମାନସିକ ପ୍ରକ୍ରିୟାରୁ ଜାତ ହୁଏ । ଜାତୀୟ କବିଙ୍କର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଯେତେବେଳେ ସେ ମୃତ୍ୟୁ ସଙ୍ଗେ ସଂଗ୍ରାମ କରୁଥିଲେ, ଲେଖକ ତାଙ୍କୁ ପଚାରିଲା; ''ବିଶେଷ କଷ୍ଟ ହେଉ ନାହିଁ ତ ?''

ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, ''ବି ଟିକୁ କାଟିଦିଅ ।'' ଆଉ ଅଧିକ କଥାବାର୍ତ୍ତା କରିବା ଅବସ୍ଥାରେ ସେ ନ ଥିଲେ । କିନ୍ତୁ ମୃତ୍ୟୁ ଯନ୍ତ୍ରଣାରେ ଛଟପଟ ହେଉଥିବାବେଳେ ସେ କିପରି ଏଡ଼େ ସୂକ୍ଷ୍ମ ଉପାୟରେ 'ବିଶେଷ କଷ୍ଟ'କୁ 'ଶେଷ କଷ୍ଟ'ରେ ପରିଣତ କରି ମନୋଭାବ ପ୍ରକାଶ କରିପାରିଲେ ତାହା ଭାବିଲେ ବିସ୍ମୟ ଲାଗେ । ସେଥିପାଇଁ ଏହାକୁ ଅର୍ଜିତ ଗୁଣ ନ କହି ଜନ୍ମଗତ ଶକ୍ତି କହିବା ଅଧିକ ଯୁକ୍ତିଯୁକ୍ତ ନୁହେଁକି ?

ତେବେ ଜୀବନର ସନ୍ଧ୍ୟାକାଳରେ କବିଙ୍କର ଅନୁଭୂତ ଅତ୍ୟନ୍ତ ଦୁଃଖଦାୟକ ଥିଲା । ଗାନ୍ଧୀଯୁଗର ଆଦର୍ଶ ରହିଲା ନାହିଁ । ସତ୍ୟାଗ୍ରହ ଅମଳର ସର୍ବତ୍ୟାଗୀ ସଂଗ୍ରାମୀମାନେ ରାଜଐଶ୍ୱର୍ଯ୍ୟପଦ ପାଇ ଚରମ ଭୋଗୀ ହୋଇପଡ଼ିଲେ । ଅନୀତ, ଦୁର୍ନୀତ ଓ ଶୋଷଣ ହେଲା ଜୀବନର ମାନଦଣ୍ଡ । ଯେ କୌଣସି ଉପାୟରେ ଧନ ଠୁଳ କରି ପ୍ରଭାବଶାଳୀ ହେବାପାଇଁ ଲୋକପ୍ରତିନିଧିମାନେ ଆଦୌ କୁଣ୍ଠିତ ହେଲେ ନାହିଁ । ସ୍ୱାଧୀନତା ପରବର୍ତ୍ତୀ ଏହିପରି ଏକ ଅବକ୍ଷୟ କାଳରେ କବି ଶେଷ ନିଃଶ୍ୱାସ ତ୍ୟାଗ କଲେ ୧୯୭୩ ମସିହା ଏପ୍ରିଲ ୨୮ ତାରିଖରେ । ଏହି ଅବସରରେ କବିଙ୍କର ଅନ୍ତିମ ଜୀବନର ଲେଖା କବିତାର କେତୋଟି ଧାଡ଼ି ମନେପଡ଼ୁଛି—

''ଲେଖିବାର ଯାହା ଲେଖି ସାରିଛି ମୁଁ
ଆଉ ପାରୁନାହିଁ କିଛି ମୁଁ ଲେଖି ।
ଦେଖିବାର ଯାହା ଦେଖି ସାରିଛି ମୁଁ
ଆଉ ପାରୁନାହିଁ କିଛି ମୁଁ ଦେଖି ।
ଜୀବନଟା-ଯାକ ଅନୁଭବ କଲି
ସାରା ଦୁନିଆଟା କେବଳ ଫାଙ୍କି ।''

---

# ଜାତୀୟ ଚେତନା—ସ୍ୱରାଜ୍ୟ ଆନ୍ଦୋଳନ ଓ ଗାନ୍ଧୀଯୁଗ

୧୮୦୩ ସାଲରେ ଇଂରେଜମାନେ ମରହଟ୍ଟାମାନଙ୍କୁ ପରାସ୍ତ କରି ଓଡ଼ିଶା ଅଧିକାର କଲେ । ପୂର୍ବରୁ ପ୍ରାୟ ଦୁଇଶହ ବର୍ଷକାଳ ମୋଗଲ ଏବଂ ମରହଟ୍ଟାଙ୍କ ଅଧୀନରେ ଓଡ଼ିଶା ଶାସିତ ହୋଇଥିଲେ ହେଁ ଓଡ଼ିଆଙ୍କର ନିଜସ୍ୱ ଶିଳ୍ପ, ବାଣିଜ୍ୟ ଓ ଭାଷା ଉପରେ ସେମାନେ ହସ୍ତକ୍ଷେପ କରି ନ ଥିଲେ । ରାଜନୈତିକ ପରାଧୀନତା ସତ୍ତ୍ୱେ ସାଂସ୍କୃତିକ ଏବଂ ସାମାଜିକ ଜୀବନରେ ଜନସାଧାରଣ କିଛି ସ୍ୱାତନ୍ତ୍ର୍ୟ ଉପଭୋଗ କରୁଥିଲେ । କିନ୍ତୁ ଇଂରେଜ ଶାସନର ଆରମ୍ଭରୁ ଜନସାଧାରଣ ଅନୁଭବ କଲେ ଯେ ସେମାନଙ୍କର ନିଜସ୍ୱ ସଂସ୍କୃତି, ଶିଳ୍ପବାଣିଜ୍ୟ ଓ ଭାଷା ସାହିତ୍ୟ ଅତ୍ୟନ୍ତ ସଙ୍କଟର ସମ୍ମୁଖୀନ । ପୁନଶ୍ଚ ଯେଉଁମାନେ ପାଶ୍ଚାତ୍ୟ ଶିକ୍ଷା ଲାଭ କଲେ, ସେମାନେ ଏ ଦେଶର ପ୍ରାଚୀନ ଐତିହ୍ୟ ପ୍ରତି କେବଳ ବିମୁଖ ହେଲେ ନାହିଁ, ଅନେକ ଧର୍ମାନ୍ତର ଗ୍ରହଣ କରି ଖ୍ରୀଷ୍ଟିଆନ ହୋଇଯାଉଥିଲେ ଓ ପାଶ୍ଚାତ୍ୟ ସଭ୍ୟତାର ଅନ୍ଧ ସ୍ତାବକ ହୋଇଗଲେ । ଫଳରେ ଏହି ସଙ୍କଟସନ୍ଧି ସମୟରେ ଦେଶ ଉପଯୁକ୍ତ ନେତୃତ୍ୱ ପାଇଁ ବ୍ୟାକୁଳ ହେଉଥିଲା । ଇଂରେଜମାନେ ଖୋର୍ଦ୍ଧା ଦଖଲ କରିବାର ମାତ୍ର ଦୁଇବର୍ଷ ପରେ ୧୮୦୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଗଜପତିଙ୍କର ମନ୍ତ୍ରୀ ଜୟୀ ରାଜଗୁରୁ ଇଂରେଜଶାସନ ବିରୁଦ୍ଧରେ ବିଦ୍ରୋହ କରିବାରୁ ତାଙ୍କୁ ଫାଶୀ ଖୁଣ୍ଟରେ ଚଢ଼ାଇ ଦିଆଗଲା । ସେତେବେଳେ ଜନମତ ଏବଂ ଜନଜାଗୃତି ପ୍ରାୟ ନ ଥିଲା କହିଲେ ଚଳେ । ଚତୁର୍ଦ୍ଦିଗରେ ଏକପ୍ରକାର ହତାଶା ଏବଂ ହାହାକାର ଭାବ । ତେଣୁ ଲୋକମୁଖରେ ଗୀତ ଆକାରରେ କଥା ରହିଗଲା—

> "କାଉ ବୋଲେ ରାଉ ରାଉ
> ଜୟୀ ରାଜଗୁରୁ ଫାଶୀ ପାଇଲେ
> କେହି ନ କହିଲେ ଆଉ ।"

ସମଗ୍ର ଦେଶ ନୀରବରେ ଏହି ଜାତୀୟ ଅପମାନକୁ ବରଦାସ୍ତ କଲା, କୌଣସି ପ୍ରତିକ୍ରିୟା ପ୍ରକାଶ କରିପାରିଲା ନାହିଁ । ୧୮୧୭ ସାଲରେ ଓଡ଼ିଶାର ପାଇକ ବିଦ୍ରୋହ ଇଂରେଜମାନଙ୍କ ବିରୁଦ୍ଧରେ ଆଉ ଏକ ଯୁଦ୍ଧ ଘୋଷଣା ଥିଲା । ଗଜପତିଙ୍କର ପୂର୍ବତନ ସେନାପତି ବକ୍ସି ଜଗବନ୍ଧୁ ବହୁକାଳ ଗରିଲାଯୁଦ୍ଧ କରି ଏହି ବିଦ୍ରୋହକୁ ଚଳାଇ ରଖିଲେ । ମାତ୍ର ଦେଶରେ ଏକତାର ଅଭାବ ଏବଂ ପ୍ରବଳ ଶକ୍ତିଶାଳୀ ଇଂରେଜ ବାହିନୀର ନିର୍ମମ ଅତ୍ୟାଚାରରେ ଏହି ଅଭିଯାନ ମଧ୍ୟ ବିଫଳ ହୋଇଗଲା । ବକ୍ସି ଆମରଣ କେବଳ ଗୃହବନ୍ଦୀ ହେଲେ ନାହିଁ । ଓଡ଼ିଶାର ପାଇକ କୁଳକୁ ସର୍ବହରା କରି ଦିଆଗଲା ଏବଂ ସେମାନେ ଯେପରି ଅତୀତର ରଣକୌଶଳ ଏବଂ ଆତ୍ମାଭିମାନ ଭୁଲିଯିବେ, ଏଥିପାଇଁ

ସମସ୍ତ ପ୍ରକାର ରାଜନୈତିକ ଏବଂ ସାମାଜିକ କୌଶଳ ଖଞ୍ଜି ଦିଆଗଲା । ଅବଶ୍ୟ ୧୮୫୭ ସାଲରେ ସିପାହୀ ବିଦ୍ରୋହ ଥିଲା ଇଂରେଜଙ୍କ ବିରୁଦ୍ଧରେ ଭାରତବ୍ୟାପୀ ଏକ ଆନ୍ଦୋଳନ । ଏହା ମଧ୍ୟ ଐକ୍ୟ ଏବଂ ସଂଗଠନ ଅଭାବରୁ ସଫଳ ହୋଇପାରିଲା ନାହିଁ । ଏହି ସମୟରେ ଓଡ଼ିଶାରେ ବୀର ସୁରେନ୍ଦ୍ର ସାଏ ସମ୍ବଲପୁର ଅଞ୍ଚଳରେ ୧୮୬୦ ମସିହାଯାଏଁ ସ୍ୱାଧୀନତା ରକ୍ଷିଥିଲେ ହେଁ ତାହା କେତେକାଳ ଅବା ଅକ୍ଷୁଣ୍ଣ ରହିପାରିଥାନ୍ତା ! ସେ ବିପ୍ଳବର ମଧ୍ୟ ଅଧୋଗତି ହେଲା । ସେଇକଥା ଲୋକମୁଖରେ ଏବେ ବି ବୋଲା ହୋଇଆସୁଛି—

"ଭଲ୍ ଭଲ୍ ଭଲ୍ ଭଲ୍
ଛବିଲ ସାଏଙ୍କୁ ବାନ୍ଧିଲା ଗୁଲ୍ ଗୋ
ଲୁଦୋପାଣି ମହିଂଖୁଲ୍, ସଜନୀ ଗୋ ।"

ସୌଭାଗ୍ୟକ୍ରମେ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଭାରତୀୟ ନବଜାଗରଣର ମହାନ୍ ପ୍ରବକ୍ତା ରୂପେ ଆବିର୍ଭୂତ ହେଲେ ସ୍ୱାମୀ ବିବେକାନନ୍ଦ । ବିବେକାନନ୍ଦ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ କି ଭାରତୀୟ ମନକୁ ଦରିଦ୍ର ଜନସାଧାରଣଙ୍କ ଆଡ଼କୁ ଫେରାଇବାକୁ ଆହ୍ୱାନ ଦେଲେ । ସେ କହିଲେ ଯେ ଦରିଦ୍ର ଜନସାଧାରଣଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରି ସେମାନଙ୍କର ଅର୍ଥନୈତିକ ଦୁର୍ଗତି ଦୂର ନ କଲେ ଭାରତର ଭାଗ୍ୟୋଦୟ ହେବ ନାହିଁ । ସେମାନଙ୍କୁ ଅବହେଳିତ କରି ରଖିବା ଏକ ଜାତୀୟ ଅପରାଧ । ଯେଉଁ ରାଜନୀତି ଜନତାର ସୌଭାଗ୍ୟ ଆଣିବା ପାଇଁ କୁଣ୍ଠିତ, ସେ ରାଜନୀତି ମୂଲ୍ୟହୀନ । ଯେଉଁମାନଙ୍କୁ ଆମେ ପତିତ, ଅବହେଳିତ କରି ରଖିଛେ, ସେମାନଙ୍କର ଉତ୍ଥାନ ନ ହେଲା ପର୍ଯ୍ୟନ୍ତ ଭାରତୀୟ ଜାତୀୟ-ଜୀବନ ପ୍ରତିଷ୍ଠିତ ହୋଇପାରିବ ନାହିଁ । କାରଣ ଏହି ଦରିଦ୍ର ଜନସାଧାରଣ ହିଁ ଦେଶର ଜନନୀତା । ସେହିମାନେ ନିଜ ଲୁହ ବୁହାଇ ଦେଶର ସାର୍ବଜନୀନ ବିକାଶରେ ସାହାଯ୍ୟ କରିଥାଆନ୍ତି । ଅଥଚ ସେମାନଙ୍କୁ ସମାଜ କେବେହେଲେ ଏକ ସମ୍ମାନିତ ଜୀବନଯାପନ ପାଇଁ ସୁଯୋଗ ଦେଇନାହିଁ ! ଜାତି ପାଇଁ, ସମାଜ ପାଇଁ ଏକ ଉତ୍ସର୍ଗୀକୃତ ଜୀବନ ଆବଶ୍ୟକ । ତାହା ନ ହେଲେ ଏହି ପରାଧୀନ ଜାତିର ଦୁର୍ଗତି ଦୂର ହେବ କିପରି ? ବିବେକାନନ୍ଦଙ୍କର ଆହ୍ୱାନ ଥିଲା—

"I too believe that India will awake again, if any one could love with all his heart the people of the country—beeft of the grace of affluence, of blasted fortune, their discretion totally lost, down-trodden, ever-starved, quarrelsome and envious. Then only will India awake when hundreds of large-hearted men and women, giving up all desires of enjoying the luxuries of life, will long and exert themselves to their

almost for the wellbeing of the millions of their countrymen who are gradually sinking lower and lower in the vortex of destitution and ignorance."([୧୯])

ଏହି ଉଦ୍ଦେଶ୍ୟ ହାସଲ ପାଇଁ ସ୍ୱାମିଜୀ ନିଃସ୍ୱାର୍ଥପର ସର୍ବତ୍ୟାଗୀ ଯୁବକମାନଙ୍କର ଦେଶସେବା କାମନା କରୁଥିଲେ ଯେଉଁମାନେ ଏକ ଉଚ୍ଚ ଆଦର୍ଶର ଅନୁରୋଧରେ ଦେଶ-ମାତାର ସେବାପାଇଁ ଜୀବନକୁ ଉତ୍ସର୍ଗ କରିଦେବେ । ପରାଧୀନ ଭାରତବର୍ଷରେ ଏପରି ଆହ୍ୱାନ ଥିଲା ସମ୍ପୂର୍ଣ୍ଣ ଅଭିନବ । ଜାତି ଓ ସମାଜର କଲ୍ୟାଣ ଲାଗି ତ୍ୟାଗ ସ୍ୱୀକାର କରିବା ପାଇଁ ଲୋକମାନେ ପ୍ରସ୍ତୁତ ହେବାକୁ ଲାଗିଲେ ।

## ବନ୍ଦେ ମାତରଂ ଏବଂ "ସ୍ୱରାଜ୍ୟ" ଭାବନା

ସଖାରାମ ଗଣେଶ ଦେଓସ୍କର ଜଣେ ମହାରାଷ୍ଟ୍ରୀୟ ବ୍ରାହ୍ମଣ । ସେ ଥିଲେ ପରମ ବିପ୍ଳବୀ । ସେ ଚମତ୍କାର ବଙ୍ଗଳା ଭାଷା ଲେଖୁଥିଲେ ଏବଂ କହୁଥିଲେ । ସେ କାଳରେ ସରଳ ବଙ୍ଗଳା ଭାଷାରେ ''ଶିବାଜୀ''ଙ୍କର ଖଣ୍ଡିଏ ଜୀବନ ଚରିତ ଲେଖି ତହିଁରେ ପ୍ରଥମ କରି 'ସ୍ୱରାଜ୍ୟ' ଶବ୍ଦ ସେ ବ୍ୟବହାର କରିଥିଲେ । ଏହାପରେ ସେ ଲେଖିଥିଲେ— "ଦେଶର କଥା" । ଏହି ପୁସ୍ତକରେ ଇଂରେଜ ସାମ୍ରାଜ୍ୟବାଦୀଙ୍କର ଭାରତୀୟ ଉପନିବେଶରେ ଅର୍ଥନୈତିକ ଶୋଷଣ ପ୍ରତି ସେ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କଲେ । ଏହି ଦୁଇଟି ପୁସ୍ତକ ବଙ୍ଗୀୟ ଶିକ୍ଷିତ ସମାଜରେ ଚହଳ ପକାଇଦେଲା । ସେହି ସମୟରେ ବଙ୍ଗଦେଶରେ ଦୁଇଟି ବିଖ୍ୟାତ ପତ୍ରିକା 'ଯୁଗାନ୍ତର' ଏବଂ 'ବନ୍ଦେ ମାତରଂ' ବିପ୍ଳବାତ୍ମକ ଲେଖା ପ୍ରକାଶ କରି ପ୍ରବଳ ଜନଜାଗରଣ କରାଇବାରେ ଲାଗିଥିଲେ । 'ବନ୍ଦେ ମାତରଂ' ଧ୍ୱନି ଚାରିଆଡ଼େ ଖେଳିଗଲା । ଦେଶପାଇଁ ସମସ୍ତେ ଏକାଠି ହେବା, ଏକାଠି କାର୍ଯ୍ୟ କରିବା ଏବଂ ସମସ୍ତେ ଏକ ସଙ୍ଗରେ ବଞ୍ଚିବା—'ବନ୍ଦେ ମାତରଂ'ର ଏହି ଆହ୍ୱାନ ଦେଶବକ୍ଷରେ ଖେଳାଇଦେଲା ଏକ ଅଭୂତପୂର୍ବ ଆନନ୍ଦ ଓ ଉଚ୍ଛ୍ୱାସର ବାଣୀ । ବଙ୍ଗଳାର ଯୁବସମ୍ପ୍ରଦାୟ ଏଥିରେ ଗଭୀର ଭାବରେ ପ୍ରଭାବିତ ହେଲେ, ବିପ୍ଳବୀ ହେବା ପାଇଁ ପ୍ରେରଣା ଲାଭ କଲେ । କଲିକତା କଂଗ୍ରେସରେ ଭାରତବିଖ୍ୟାତ ନେତା ଦାଦାଭାଇ ନାରୋଜୀ ଏହି 'ସ୍ୱରାଜ୍ୟ' ଶବ୍ଦଟିକୁ ଔପନିବେଶିକ ସ୍ୱାୟତ୍ତ ଶାସନ ଅର୍ଥରେ ଗ୍ରହଣ କରିଥିଲେ । କିନ୍ତୁ ଏପରି ସଙ୍କୁଚିତ ଅର୍ଥ ଅଧିକଦିନ ଗ୍ରାହ୍ୟ ହେଲା ନାହିଁ । ବିପ୍ଳବୀ ଅରବିନ୍ଦ ଏହି ଶବ୍ଦର ଇଂରେଜୀ ପ୍ରତିଶବ୍ଦ ଲେଖିଲେ 'ଇଣ୍ଡିପେଣ୍ଡେନ୍ସ' । 'ବନ୍ଦେ ମାତରଂ' ପତ୍ରିକାରେ ଜାତୀୟ ଲକ୍ଷ୍ୟ ରୂପେ 'Independence' ବୋଲି ସେ ଘୋଷଣା କଲେ ।[୨୦]

୧୯ । The Complete works of Swami Vivekananda—Vol V—P. 125-126.

୨୦ । ଅରବିନ୍ଦ ସାହିତ୍ୟ ସଂଗ୍ରହ—ପ୍ରଥମ ଖଣ୍ଡ—୧୯୭୦—ପୃ ୨୫-୨୬ ପାଦଟୀକା ।

ସୁଖର କଥା ଯେ ୧୮୮୫ ଖ୍ରୀଷ୍ଟାବ୍ଦରେ ଜାତୀୟ କଂଗ୍ରେସର ପ୍ରତିଷ୍ଠା ହେଲା ଏବଂ ଦେଶର ବୁଦ୍ଧିଜୀବୀ ଗୋଷ୍ଠୀ କ୍ରମଶଃ ଏହି ଅନୁଷ୍ଠାନ ପ୍ରତି ଆକୃଷ୍ଟ ହେଲେ । ଭାରତର ପ୍ରଧାନ ନଗରୀମାନଙ୍କରେ ଏହି ଅନୁଷ୍ଠାନର ବାର୍ଷିକ ଅଧିବେଶନରେ ଦେଶର ବିଭିନ୍ନ ଅଞ୍ଚଳରୁ ବୁଦ୍ଧିଜୀବୀମାନେ ପ୍ରତିନିଧି ଭାବରେ ଯୋଗ ଦେଇ ଦେଶର ସମୁହସ୍ୱାର୍ଥ ସମ୍ପର୍କରେ ଆଲୋଚନାରେ ଅଂଶଗ୍ରହଣ କରୁଥିଲେ ଏବଂ ବିଦେଶୀ ରାଜଶକ୍ତି ନିକଟରେ ଦେଶପାଇଁ ଦାବି ଜଣାଉଥିଲେ । ତେଣୁ ଏହି ପରାଧୀନ ଦେଶରେ କ୍ରମଶଃ ଜାତୀୟ ଭାବନା ସଂଗ୍ରାରିତ ହେବାକୁ ଲାଗିଲା । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ ଏବଂ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଉତ୍କଳ ସମ୍ମିଳନୀ ସଂଗଠନ ଓଡ଼ିଶାରେ ଜାତୀୟ ଭାବନାର ପ୍ରାଣପ୍ରତିଷ୍ଠାରେ ଅତ୍ୟନ୍ତ ସହାୟକ ହୋଇଥିଲା । ଏ ଜାତିର ପ୍ରାଚୀନ ଐତିହ୍ୟ ଏବଂ ଗୌରବମୟ ପରମ୍ପରାର ଆଲୋଚନା ହେବା ଯୋଗୁ ଅବସାଦଗ୍ରସ୍ତ ଏବଂ ନୈରାଶ୍ୟବିଜଡ଼ିତ ସମାଜ ଜୀବନରେ ଏକ ନୂତନ ଉଦ୍ଦୀପନା ଜାଗ୍ରତ ହେବାପାଇଁ ସୁଯୋଗ ମିଳିଲା । ପ୍ରଥମ କରି ଏ ଦେଶର ଲୋକେ ଏକ ଅନ୍ଧକାର ଗର୍ଭରେ ଆଲୋକର କ୍ଷୀଣରେଖା ଦେଖିବାକୁ ପାଇଲେ । ସବୁ କଥାରେ ପାଶ୍ଚାତ୍ୟ ଦେଶକୁ ସ୍ମରଣ କରି ସେମାନେ ଅନୁଭବ କଲେ ଯେ ଏ ଜାତିର ମଧ୍ୟ ଏକ ଅବିସ୍ମରଣୀୟ ସଭ୍ୟତା ଓ ସଂସ୍କୃତି ରହିଅଛି । ଏହି ପରିପ୍ରେକ୍ଷୀରେ ଅବହେଳିତ ଜାତିକୁ ସ୍ମରଣ କରାଇ ଦେବାପାଇଁ ୧୮୯୯ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ 'ଅବକାଶ ଚିନ୍ତା' ପୁସ୍ତକରେ ଗୋପବନ୍ଧୁ ଲେଖିଲେ—

''ଉତ୍କଳ ମାତାର ଅତୀତ ଯଶ
ବିପୁଳ ବିଭବ ବଳ ସାହସ
ସ୍ମରଣେ ଫାଟିଯାଏ ହୃଦୟ
ଦେଖି ଅବସ୍ଥାର ଏ ବିପର୍ଯ୍ୟୟ,
ରକ୍ତମାଂସ ଦେହ ଧରି
ଅଧୀର ଆତୁର କିଏ ସେ ନ ହେବ
ଦେଖି ମାତା ଏତେ ସରି ।'' (ପ୍ରାର୍ଥନା)

''ଉଠୁ ଘରେ ଘରେ ଅକୁଣ୍ଠିତ ସ୍ୱରେ
ସ୍ୱାଧୀନ ସଙ୍ଗୀତ ଧ୍ୱନି
ଗାଆନ୍ତୁ ଉତ୍କଳେ ବୃଦ୍ଧ ଯୁବା ବାଳେ
ଜୟ ଭାରତ ଜନନୀ ।''
(ସାରଳା ଦାସ)

''ନିଜ ସୁଖ ଲାଗି ଜାତି ଲୁହେ ହିନ୍ଦୁ
ବଣ୍ଟି ହେଲେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।

ଦେଖାଅ ଏ ସତ୍ୟ ଆପଣା ପରାଣେ
ଦିଅ ଏହି ମନ୍ତ୍ର ସର୍ବବର୍ଣ୍ଣ କାନେ ।
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ବିଶ୍ୱହିତେ ତେଜି ଅଭିମାନ ।"
( ବ୍ରାହ୍ମଣ ଯୁବକମାନଙ୍କ ପ୍ରତି )

ଊନବିଂଶ ଶତାବ୍ଦୀର ଶେଷ ଦୁଇଦଶକ ହେଉଛି ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରାଣପ୍ରତିଷ୍ଠାର କାଳ । ଏହି କାଳରେ ଓଡ଼ିଆ ସାହିତ୍ୟର ସର୍ବଶ୍ରେଷ୍ଠ ବନ୍ଧାଣି ଥିଲେ ରାଧାନାଥ ରାୟ, ଫକୀରମୋହନ ସେନାପତି, ମଧୁସୂଦନ ରାଓ ଓ ଗଙ୍ଗାଧର ମେହେର । ଏହି ଜାତୀୟ କବିଗଣ ପ୍ରତ୍ୟକ୍ଷ ଭାବରେ ସ୍ୱରାଜ୍ୟ ଏବଂ ସ୍ୱାଧୀନତାର କଥା କହି ନ ଥିଲେହେଁ ସ୍ୱଦେଶୀ ଭାବନାକୁ ନିଜ ଲେଖାରେ ପ୍ରଚାର କରିଥିଲେ ଏବଂ ପ୍ରଥମ କରି ମାତୃଭୂମି ଆମର ନମସ୍ୟ ଏବଂ ମାତୃଭାଷାର ସେବାକରିବା ଆମର ପରମ କର୍ତ୍ତବ୍ୟ ବୋଲି ସେମାନେ ସୂଚାଇ ଦେଇଯାଇଥିଲେ । ଏହି ସାହିତ୍ୟରଥୀଗଣ ଜାତୀୟଭାବନାର ଉଦ୍‌ବୋଧନ ପାଇଁ ଗୌରବମୟ ଐତିହାସିକ କାହାଣୀର ଆଶ୍ରୟ କରିଥିବା ଜଣାଯାଇଛି । ରାଧାନାଥ ସେଥିପାଇଁ ଲେଖିଲେ—"ଏ ଭାରତ ଭୂମି ଆମ୍ଭର ଜନନୀ, ପୁଣ୍ୟଭୂମି ନାହିଁ ସରି ଏହାର" । ୧୮୬୯-୭୦ ସାଲରେ ଓଡ଼ିଶାରେ ଭାଷାବିଲୋପ ଆନ୍ଦୋଳନ ଏବଂ ୧୮୯୬ ସାଲରେ ସମ୍ବଲପୁର ଅଞ୍ଚଳରେ ଓଡ଼ିଆଭାଷା ପରିବର୍ତ୍ତେ ହିନ୍ଦୀ ଭାଷାର ପ୍ରଚଳନ ଯୋଗୁ ଓଡ଼ିଶାରେ ଜାତୀୟ ଆନ୍ଦୋଳନ ଅତ୍ୟନ୍ତ ପ୍ରଖର ହୋଇଉଠିଲା । ତେଣୁ ମାତୃଭାଷା ଓ ମାତୃଭୂମିର ସେବାକରିବା ପାଇଁ ଓଡ଼ିଶାର କବିମାନେ ଆହ୍ୱାନ ଜଣାଇଥିଲେ । ସେହି ସମୟରେ ଭକ୍ତକବି ମଧୁସୂଦନ ରାଓ ଲେଖିଥିଲେ—

'ମାତୃଭୂମି ମାତୃଭାଷା
ଉଭୟେ ଜନନୀ
ସେବ ତାଙ୍କୁ ଭକ୍ତିଭରେ
ଦିବସ ରଜନୀ ।
ଏ ମାନବ ଜନ୍ମ ହେଉ
ସଫଳ ମୋହର
ଏ ଭିକ୍ଷା କରନ୍ତୁ ପୂର୍ଣ୍ଣ
ପ୍ରଭୁ ମହେଶ୍ୱର ।"

ବ୍ୟାସକବି ଫକୀରମୋହନଙ୍କ ଲେଖନୀରୁ ଉଚ୍ଚାରିତ ହେଲା—
"ନାହିଁ ମା ଯିବାର ଆଶା, କୀର୍ତ୍ତିର ମନ୍ଦିର
ସେବିବି ମୋ ମାତୃଭାଷା କରିଅଛି ସ୍ଥିର ।"

ସ୍ୱଭାବକବି ଗଙ୍ଗାଧର ମେହେରଙ୍କର ଅହ୍ୱାନ ହେଲା—

'ମାତୃଭୂମି ମାତୃଭାଷାରେ ମମତା ଯା ହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନୀ ଗଣରେ ଗଣିବା ଅଜ୍ଞାନ ରହିବେ କାହିଁ ?' (ମାତୃଭୂମି)

'ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା ।' (ଉଦ୍‌ବୋଧନ)

ବିଂଶ ଶତାବ୍ଦୀର ପ୍ରଥମ ଦଶକର କଥା । ସେତେବେଳେ ଅନୁନ୍ନତ ଓଡ଼ିଆଭାଷୀ ଅଞ୍ଚଳରେ କଂଗ୍ରେସ ଆନ୍ଦୋଳନ ଆଦୌ ପ୍ରଭାବଶାଳୀ ହୋଇନାହିଁ । ତଥାପି ସ୍ୱରାଜ୍ୟ ଭାବନା ପାଇଁ ଦେଶର ଜନନେତା ଓ ସାହିତ୍ୟିକ ମାନଙ୍କ ଉଦ୍ୟମ ଅବ୍ୟାହତ ରହିଛନ୍ତି । ୧୯୦୮ ଖ୍ରୀଷ୍ଟାବ୍ଦରେ ପଲ୍ଲୀକବି ନନ୍ଦକିଶୋରଙ୍କର 'ଶର୍ମିଷ୍ଠା' କାବ୍ୟ ପ୍ରକାଶିତ ହୁଏ । ଏହି କାବ୍ୟର କଥାବସ୍ତୁ ପୌରାଣିକ ହେଲେହେଁ ଅସୁର ରାଜାଙ୍କର କନ୍ୟା ଶର୍ମିଷ୍ଠା ମୁଖରେ କବି ଦେଶପ୍ରୀତିର ଭାବନା ପ୍ରଚାର କରିଛନ୍ତି । ନିଜର ଜନନୀଙ୍କୁ ପ୍ରବୋଧନା ଜଣାଇ ଶର୍ମିଷ୍ଠା କହିଛି—

''ଶୋଚନା ନାହିଁ ଲୋ ଜନନୀ ତହିଁ ମୋ
ସ୍ୱଜାତି ସ୍ୱଧର୍ମ ପାଇଁ
ଦିଏ ଯେହୁ ନିଜ ଜୀବନ ତା'ଠାରୁ
ପୁଣ୍ୟବନ୍ତ କେହି ନାହିଁ ।
ପିତୃସତ୍ୟ, ଜାତି-ସ୍ୱାଧୀନତା ଲାଗି
ସମର୍ପିଛୁ ଏ ଜୀବନ
ଦାନବ କୁଳରେ ଲାଗିବ କଳଙ୍କ
ନ ଦେଖା ମା ପ୍ରଲୋଭନ ।''

ଅଗଣିତ ପ୍ରଜାବର୍ଗର ସ୍ୱାର୍ଥକୁ ଏଡ଼ିଦେବା ଉଚିତ ହେବ କି ? ପ୍ରଜାକୁଳ ପାଇଁ ଏପ୍ରକାର ଭାବନାର ଅନ୍ତରାଳରେ ସ୍ୱଦେଶୀଭାବନା ଓ ନବଜାଗରଣଜନିତ ଆନ୍ଦୋଳନର ଯେ ପ୍ରଭାବ ରହିଥିଲା, ସ୍ୱୀକାର କରିବାକୁ ହେବ । ୧୯୨୦ ସାଲ ପୂର୍ବରୁ ଓଡ଼ିଶାରେ କଂଗ୍ରେସର କୌଣସି ବିଧିବଦ୍ଧ ଅନୁଷ୍ଠାନ ନ ଥିଲା । ସେହି ସାଲରେ ସିଂହଭୂମିର ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀକୁ ସଙ୍କୁଚିତ କରିଦେଇ ଉତ୍କଳମଣି ଗୋପବନ୍ଧୁ କଂଗ୍ରେସ ଅନୁଷ୍ଠାନ ଗଠନକଲେ ଏବଂ ପ୍ରତ୍ୟକ୍ଷ ଭାବରେ ଅସହଯୋଗ ଆନ୍ଦୋଳନ ସହିତ ସାମିଲ ହୋଇଗଲେ । ସେହି ସମୟ ପର୍ଯ୍ୟନ୍ତ ଉତ୍କଳ-ସମ୍ମିଳନୀ ଥିଲା ଓଡ଼ିଆ ଜାତୀୟତାର ପ୍ରମୁଖ ବାର୍ତ୍ତାବହ । ଏହି ମଞ୍ଚ ଉପରେ ଓଡ଼ିଶାର ବରିଷ୍ଠ କବି ରାଧାନାଥ, ଉତ୍କଳଗୌରବ ମଧୁସୂଦନ, ଲକ୍ଷ୍ମୀକାନ୍ତ, ଭିକାରୀ ଚରଣ, ବ୍ରଜସୁନ୍ଦର, ଗୋବିନ୍ଦଚନ୍ଦ୍ର ଶୂରଦେଓ, କୃଷ୍ଣମୋହନ ପଟ୍ଟନାୟକ, ଗୋଦାବରୀଶ ମହାପାତ୍ର ପ୍ରଭୃତିଙ୍କ

ଦ୍ୱାରା ରଚିତ ଜାତୀୟ ସଙ୍ଗୀତ ବୋଲି ଯାଇ ଉତ୍କଳର ଜାତୀୟ ଜୀବନକୁ ବିପୁଳ ଭାବରେ ପ୍ରଭାବିତ କରିଯାଉଥିଲା ।

ଉତ୍କଳଗୌରବ ଦେଶପ୍ରାଣ ମଧୁସୂଦନ ଉତ୍କଳ ସମ୍ମିଳନୀ ମଞ୍ଚ ଉପରୁ ଆହ୍ୱାନ ଜଣାଇଲେ—

"କୋଟିଏ ସନ୍ତାନ ଗୋଟିଏ ସ୍ୱରରେ
ଜନନୀ ଜନନୀ ଡାକ
ତୃଷାରେ କାତର ଗଗନକୁ ଚାହିଁ
ଯେସନେ ଡାକେ ଚାତକ ।
ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କରି
ସ୍ୱାର୍ଥକୁ ଦିଅ ଆହୁତି
ସ୍ୱାର୍ଥମେଧ ଯଜ୍ଞ ଗୃହଆଡ଼େ ନାଚ
ଭୂତକୁ ମିଶାଇ ଭୂତି ।"

କାନ୍ତକବି ଲକ୍ଷ୍ମୀକାନ୍ତ ଐଶ୍ୱର୍ଯ୍ୟମୟୀ ଉତ୍କଳଜନନୀର ଗୌରବଗାଥା ତାର ସନ୍ତାନମାନଙ୍କ କର୍ଣ୍ଣକୁହରରେ ପ୍ରବେଶ କରାଇଦେଲେ ନିଜର ଜାତୀୟ ସଙ୍ଗୀତ ମାଧ୍ୟମରେ । ଯୋଗୀଋଷି ସେବିତ ଏହି ପବିତ୍ର ଉତ୍କଳଭୂମିରେ ଅବହେଳା କରିବା ସର୍ବାଦୌ ମହାପାପ । ତାର ଐତିହ୍ୟ ଅତ୍ୟନ୍ତ ବିଭବମଣ୍ଡିତ ଏବଂ ସେହି ଜନ୍ମଭୂମି କୋଳରେ ଜନ୍ମଗ୍ରହଣ କରି ଲାଳିତ ପାଳିତ ହେବାରେ କେଉଁ ସନ୍ତାନ ଗର୍ବିତ ନ ହେବ ? ତେଣୁ ସମ୍ମିଳନୀ ମଞ୍ଚ ଉପରୁ ଲକ୍ଷ୍ମୀକାନ୍ତଙ୍କର ସଙ୍ଗୀତ ଶୁଣାଗଲା ଏହିପରି—

"ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁଭାଷମୟୀ ଜନନୀ, ଜନନୀ, ଜନନୀ ।
ପୂତ-ପୟୋଧି-ବିଧୌତ ଶରୀରା
ତାଳତମାଳ-ସୁଶୋଭିତ-ତୀରା
ଶୁଭ୍ର ତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ।"

ଔପନିବେଶିକ ଶାସନର ଶୋଷଣରେ ଉତ୍ପୀଡ଼ିତ ଦେଶବାସୀ ହାହାକାର କରିବାକୁ ଲାଗିଲେ । ନିଜର ବାଣିଜ୍ୟିକ ସ୍ୱାର୍ଥ ପାଇଁ ଇଂରେଜ ଶାସକବର୍ଗ ଏ ଦେଶର ଶିଳ୍ପୀକୁଳକୁ ଧ୍ୱଂସ କରିଦେଲେ । ଯେଉଁ ଦେଶର ଉତ୍ପାଦିତ ଦ୍ରବ୍ୟ ସୁଦୂର ଦେଶବିଦେଶରେ ଯୁଗଯୁଗ ଧରି ଆଦୃତ ହେଉଥିଲା, ସେହି ଦେଶର ଅଧିବାସୀ ମହୋଦଧି କୂଳରେ ବସବାସ କରି ସାମାନ୍ୟ ଲୁଣ ଟିକିଏ ପାଇଁ ବିଦେଶକୁ ଅପେକ୍ଷା କରି ରହିଲେ । ଏଥିପାଇଁ ଉତ୍କଳ ସମ୍ମିଳନୀ ସ୍ୱଦେଶୀ ଶିଳ୍ପର ଅଭ୍ୟୁତ୍ଥାନ ପାଇଁ ଆହ୍ୱାନ ଜଣାଇଥିଲେ । ଦେଶପ୍ରାଣ

ମଧୁସୂଦନଙ୍କର ଉତ୍କଳ ଟ୍ୟାନେଶ୍ର ଓ କଟକର ତାରକସି ଶିଳ୍ପ ଏହି ଆହ୍ୱାନର ଫଳଶ୍ରୁତି ମାତ୍ର । ବ୍ୟାସକବି ଫକୀରମୋହନଙ୍କର ଲେଖନୀରୁ ସେହି ଦୁର୍ଦ୍ଦଶାର ଚିତ୍ର ଝରିପଡ଼ିଲା କବିତା ଆକାରରେ—

ଓଳାଡଲେ ଲୁଣ କୋଟିଏ ମହଣ
ଥାଉ ମୋହ କଥା ଶୁଣ
ବୋଇଲେ କ ହେବ, ଖାଇବାକୁ ହେବ
ଲିଭରପୁରରୁ ଲୁଣ ।
ମାଞ୍ଚେଷ୍ଟର ତନ୍ତ୍ରୀ ଲୁଗା ବୁଣୁଛନ୍ତି
ତୁମ୍ଭମାନଙ୍କ ସକାଶେ
ତୁଚ୍ଛୁ ତନ୍ତ୍ରୀବଂଶ ହେଉ ସର୍ବନାଶ
ଯାଆନ୍ତୁ ସେ ବନବାସେ ।
ସ୍ୱଦେଶର ଶିଳ୍ପ ସବୁ ଅଳ୍ପ ଅଳ୍ପ
ଦେଖୁଛ ଯାଉଛି ବୁଡ଼ି
ଦେଖୁନାହୁଁ ଭାଳି ସବୁଛି ସଙ୍ଗାଳି
ଶୋଇଛ ମାଠିଟି ଘୋଡ଼ି ।'
(ଉତ୍କଳଭୂମି)

ଏ କଥା ସ୍ୱୀକାରକରିବାକୁ ହେବ ଯେ କଂଗ୍ରେସ ମଞ୍ଚ ଉପରୁ ପ୍ରଥମେ ଏହି ସ୍ୱଦେଶୀ ଆନ୍ଦୋଳନ ପାଇଁ ଆହ୍ୱାନ ଦିଆଯାଇଥିଲା । ପ୍ରଦେଶମାନଙ୍କରେ କଂଗ୍ରେସ ସଂଗଠନ ବିଧିବଦ୍ଧ ଭାବରେ ଗଠିତ ହୋଇ ନ ଥିବାରୁ ସ୍ୱଦେଶପ୍ରେମୀ ଜନନାୟକଗଣ ନିଜନିଜ କ୍ଷେତ୍ରରେ ସ୍ୱଦେଶୀ ଆନ୍ଦୋଳନ ପାଇଁ ଡାକରା ଦେଉଥିଲେ ଏବଂ କାର୍ଯ୍ୟ କରୁଥିଲେ । ୧୯୦୬ ସାଲରେ କଂଗ୍ରେସର ଗୋଟିଏ ପ୍ରସ୍ତାବରୁ ଏହା ଉପଲବ୍ଧି ହୋଇପାରିବ । "That this Congress accords its most cordial support to the Swadeshi movement and calls upon the people of the country to labour for its success, by making earnest and sustained effort to promote the growth of indigenous industries and to stimulate the production of indigenous articles by giving them preference over imported commodities even at some sacrifice." (୨୧)

---

୨୧ । Congress and Congressmen in Pre-Gandhian Era-1885-1917. By B. Majumdar and B. P. Majumdar-1967-P. 509

୧୯୧୫ ସାଲରେ ମହାତ୍ମା ଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ଭାରତ ପ୍ରତ୍ୟାବର୍ତ୍ତନ କଲେ । ସେଠାରେ ମହାତ୍ମା ଗାନ୍ଧୀ ଭାରତୀୟ ସ୍ୱାର୍ଥବିରୋଧୀ ଆଇନ ବିରୁଦ୍ଧରେ ସତ୍ୟାଗ୍ରହ କରି ନିଜର ଅଦ୍ଭୁତ ସଂଗଠନଶକ୍ତିର ପରିଚୟ ଦେଇଥିଲେ । ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ଉଦ୍ଦିଷ୍ଟ ଗାନ୍ଧୀଙ୍କର ଏହି ଆନ୍ଦୋଳନକୁ ଦମନ କରିବା ପାଇଁ ଦକ୍ଷିଣ ଆଫ୍ରିକାର ଗୋରା-ସରକାର କଠୋର ଦମନମୂଳକ କାର୍ଯ୍ୟପନ୍ଥା ଗ୍ରହଣ କଲେ ହେଁ, ଗାନ୍ଧୀଙ୍କର ଏହି ସତ୍ୟାଗ୍ରହ ଆନ୍ଦୋଳନ ଶେଷରେ ସାଫଲ୍ୟମଣ୍ଡିତ ହୋଇଥିଲା । ତେଣୁ ଭାରତରେ ଏହି ସମ୍ବାଦ ପ୍ରଚାରିତ ହୋଇ ଗାନ୍ଧୀଙ୍କ ନେତୃତ୍ୱ ସମ୍ପର୍କରେ ନୂତନ ଆଶାର ସଞ୍ଚାର କରୁଥାଏ । ଭାରତ ଫେରିଆସି ଗାନ୍ଧୀଜୀ ଭାରତର ସାଧାରଣ ଲୋକଙ୍କ ଅବସ୍ଥା ଜାଣିବା ପାଇଁ ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳ ଲୋକମାନଙ୍କ ଘନିଷ୍ଠ ସମ୍ପର୍କରେ ଆସିଲେ ଏବଂ ଏ ଦେଶର ଦାରିଦ୍ର୍ୟ, ଅଶିକ୍ଷା ଏବଂ ଶୋଷଣଚକ୍ର ଦେଖି ବିଚଳିତ ହୋଇପଡ଼ିଲେ । ଗାନ୍ଧିଜୀ ଭାରତୀୟ ଜାତୀୟ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ନେତୃତ୍ୱ ନେଲେ । ଦରିଦ୍ର ଭାରତୀୟ ଜନତାର ସେ ପ୍ରତୀକ ହୋଇଉଠିଲେ । ହିନ୍ଦୁ ସମାଜରେ ପ୍ରଚଳିତ କୁସଂସ୍କାର ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କଲେ । ଦଳିତ ଓ ତଥାକଥିତ ଅସ୍ପୃଶ୍ୟ ଜାତିଙ୍କର ସେବାକରିବା ପାଇଁ ସେ ଆଗେଇ ଆସିଲେ । ସେ ଅନୁଭବ କଲେ ଯେ ହିନ୍ଦୁ ଓ ମୁସଲମାନ ଭାରତ ଜନତାଙ୍କର ଦୁଇଟି ଚକ୍ଷୁ ସଦୃଶ । ଏହି ଦୁଇଟି ସମ୍ପ୍ରଦାୟ ମଧ୍ୟରେ ଉପଯୁକ୍ତ ଭ୍ରାତୃଭାବ ପ୍ରତିଷ୍ଠା ନ ହେଲେ ଭାରତର ଜାତୀୟ ଆନ୍ଦୋଳନ ଦୃଢ଼ୀଭୂତ ହେବ ନାହିଁ । ଗ୍ରାମବହୁଳ ଭାରତବର୍ଷରେ କୃଷିର ବିକାଶ ସଙ୍ଗେ ସଙ୍ଗେ କୁଟୀର ଶିଳ୍ପର ଉନ୍ନତି ନ ହେଲେ ଭାରତର ଅର୍ଥନୀତି ଆତ୍ମନିର୍ଭରଶୀଳ ହୋଇପାରିବ ନାହିଁ । ସେଥିପାଇଁ ଗାନ୍ଧିଜୀ ଚରଖାଦ୍ୱାରା ସୂତାକଟା ଏବଂ ହସ୍ତତନ୍ତଦ୍ୱାରା ଲୁଗାବୁଣାକୁ ନିଜ ଆନ୍ଦୋଳନର ଆୟୁଧ ରୂପେ ଗ୍ରହଣକଲେ । ଗାନ୍ଧିଜୀଙ୍କର ସ୍ୱପ୍ନର ଭାରତ ଥିଲା ଏହିପରି—ଯେଉଁଠାରେ ଦରିଦ୍ରତମ ଦରିଦ୍ର ମଧ୍ୟ ଦେଶଗଠନରେ ପ୍ରତ୍ୟକ୍ଷ ଭୂମିକା ଗ୍ରହଣ କରିପାରିବ । ସେହି ଭାରତରେ କୌଣସି ଧନୀ, ଦରିଦ୍ର, ଉଚ୍ଚନୀଚର ଶ୍ରେଣୀଗତ ଭେଦଭାବ ରହିବ ନାହିଁ । ପ୍ରତ୍ୟେକ ଜାତି ଓ ଗୋଷ୍ଠୀ ପରସ୍ପରର ସ୍ନେହ ସୌହାର୍ଦ୍ଦ୍ୟ ରକ୍ଷା କରି ଜୀବନ ଯାପନ କରିବେ । ସେହି ଭାରତବର୍ଷରେ ଛୁଆଁ ଅଛୁଆଁର କଳଙ୍କିଭାବନାକୁ ଭୁଲିଯିବାକୁ ପଡ଼ିବ ଏବଂ ସେହି ସମାଜରେ ନାରୀ ଓ ପୁରୁଷ ସମାନ ସୁଯୋଗ ଓ ସମ୍ମାନର ଅଧିକାରୀ ହେବେ ।

୧୯୨୦ ମସିହା ସେପ୍ଟେମ୍ବର ମାସରେ କଲିକତାଠାରେ ଭାରତୀୟ ଜାତୀୟ କଂଗ୍ରେସର ସ୍ୱତନ୍ତ୍ର ଅଧିବେଶନ ଆହୂତ ହୋଇଥାଏ । ଏହି ଅଧିବେଶନରେ ମହାତ୍ମା ଗାନ୍ଧୀ ଇଂରେଜ ସରକାରଙ୍କ ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନ ଚଳାଇବା ପାଇଁ ପ୍ରସ୍ତାବ ଆଗତ କଲେ । କିନ୍ତୁ ସେ କାଳର ସୁପ୍ରତିଷ୍ଠିତ ଭାରତୀୟ ନେତା ଚିତ୍ତରଞ୍ଜନ ଦାସ, ବିପିନଚନ୍ଦ୍ର ପାଲ, ମଦନମୋହନ ମାଳବ୍ୟ, ଆନିବେଶାନ୍ତ ଓ ମହମ୍ମଦ ଅଲ୍ଲୀ, ଜିନା

ପ୍ରଭୃତ ପ୍ରବଳ ବିରୋଧ କରିବା ସତ୍ତ୍ୱେ ବହୁସଂଖ୍ୟକ ଭୋଟରେ ପ୍ରସ୍ତାବଟି ଗୃହୀତ ହୋଇଗଲା । ଫଳରେ ୧୯୨୦ ସାଲରୁ ଭାରତର ନେତୃତ୍ୱ ମହାତ୍ମା ଗାନ୍ଧୀଙ୍କ ହାତକୁ ଆପେ ଆପେ ହସ୍ତାନ୍ତରିତ ହୋଇଗଲା । ସେହି ବର୍ଷ ଡିସେମ୍ବର ମାସରେ ନାଗପୁରଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ବିପୁଳ ଭୋଟରେ ପୁନର୍ବାର ଅସହଯୋଗ ଆନ୍ଦୋଳନ ପ୍ରସ୍ତାବ ଗୃହୀତ ହୋଇସିବାରୁ କଂଗ୍ରେସ ଅନୁଷ୍ଠାନରେ ଗାନ୍ଧିଜୀଙ୍କ କର୍ତ୍ତୃତ୍ୱ ପୂର୍ଣ୍ଣମାତ୍ରାରେ ପ୍ରତିଷ୍ଠିତ ହେଲା ବୋଲି ସ୍ୱୀକାର କରାଯାଏ । ଗାନ୍ଧିଜୀ କହିଲେ, ଦେଶକୁ 'ସ୍ୱରାଜ୍ୟ' ପାଇଁ ପ୍ରସ୍ତୁତ କରିବାକୁ ହେବ । ତାଙ୍କ ନେତୃତ୍ୱରେ ପରାଧୀନ ଭାରତର ଜନସାଧାରଣ ଜାତୀୟ-କଂଗ୍ରେସର ମଞ୍ଚ ଉପରେ ଏକାଠି ହେଲେ । ଭାରତୀୟ ଜନଗଣର ପ୍ରତିନିଧିତ୍ୱ କରିବାପାଇଁ କଂଗ୍ରେସ ହେଲା ଏକମାତ୍ର ଅନୁଷ୍ଠାନ । ସ୍ୱରାଜ୍ୟ ସମ୍ପର୍କରେ ଗାନ୍ଧିଜୀ କହିଲେ—

'Swaraj is impossible to be attained if there is no Hindu-Muslim unity, if we still suffer from the curse of untouchability and if our middle classes refuse to understand the gospel of Swadeshi.

ଉତ୍କଳମଣି ଗୋପବନ୍ଧୁଙ୍କ ନେତୃତ୍ୱରେ ୧୯୨୧ ସାଲରେ ଓଡ଼ିଶାରେ ସ୍ୱରାଜ୍ୟ ଆନ୍ଦୋଳନ ଅତ୍ୟନ୍ତ ପ୍ରବଳ ହୋଇଉଠିଲା । ଦେଶରେ ବହୁ ଉଦୀୟମାନ ଯୁବକ ଯୁବତୀ ହସି ହସି ଜେଲବରଣ କଲେ । ସେମାନେ ଗୋପବନ୍ଧୁଙ୍କର 'ଜାତୀୟ ମମତା, ବିଶ୍ୱଜନ-ପ୍ରୀତି, ଉତ୍କଳବାସୀର ହେଉ ଏହା ଗୀତ' ଡାକରାରେ ଅନୁପ୍ରାଣିତ ହୋଇ ଝାସ ଦେଲେ ସ୍ୱାଧୀନତା ଆନ୍ଦୋଳନରେ । ଗାନ୍ଧିଜୀଙ୍କର ଆହ୍ୱାନ ହେଲା 'ଅସହଯୋଗ କର' । 'ବନ୍ଦୀର ଆତ୍ମକଥା'ରେ ଗୋପବନ୍ଧୁ ଲେଖିଲେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ତାଙ୍କର ହୃଦୟର ବାଣୀ—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା ପଥେ ଥିଲେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।"

ଇଂରେଜମାନେ ଏ ଦେଶକୁ ଆସିଥିଲେ ବାଣିଜ୍ୟ କରିବା ପାଇଁ । ଏ ଜାତିର ଦୁର୍ଭାଗ୍ୟ ହେତୁ ସେମାନେ ଏଠାରେ ଶାସକ ହୋଇ ରହିଗଲେ ଏବଂ ସେମାନଙ୍କର ଅତ୍ୟାଚାରରେ ଏ ଜାତିର ଅର୍ଥନୀତି ଭୁଷୁଡ଼ିପଡ଼ିଲା । ବଙ୍କିମଚନ୍ଦ୍ରଙ୍କ ରଚିତ 'ବନ୍ଦେମାତରଂ' ଭାରତର ଗଗନ ପବନକୁ ପ୍ରତିଧ୍ୱନିତ କରି ଦେଶର ଯୁବପ୍ରାଣରେ

ଆଣିଦେଲା ନବୀନ ଉତ୍ସାହ ଏବଂ ଅପୂର୍ବ ଉନ୍ମାଦନା । ଏହି ସମୟରେ କବି ରଘୁନାଥ ମହାନ୍ତି ଲେଖିଥିଲେ—

"ମନ୍ଦେ ମନ୍ଦେ ଛନ୍ଦେ ଛନ୍ଦେ ଗାଅ ବନ୍ଦେମାତରଂ,
ବଜାଅ ସମର ତୂରୀ, ମାତା ଗୁଣ ଗାଅ ଝୁରି
କର୍ମି ହଠ୍ ପକ୍ଷୀ ପୁରୀ, ଗାଅ ବନ୍ଦେମାତରଂ
ଯାଉ ପଛେ ଧନ ପ୍ରାଣ, ରହୁ ଆମ ଜାତି ତ୍ରାଣ
ଧରି ବିଜୟ ନିଶାଣ, ଗାଅ ବନ୍ଦେମାତରଂ ।"

(ମଧୂପଗୁଞ୍ଜନ-୧୯୨୧)

କବି ବାଞ୍ଛାନିଧି ମହାନ୍ତି ହାତ ଠାରି ଦେଖାଇଦେଲେ ଆମର ଦୁର୍ଦ୍ଦଶାର ଅସଲ ସ୍ୱରୂପ । ତାଙ୍କଠାରୁ ଶୁଣିବାକୁ ମିଳିଲା—

"ଡାହୁଁ ଆଇଲେ ବିଦେଶରୁ ବେପାରୀ
ସବୁ ଯାଇଲେ ହେଲୁ ଆମେ ଭିକାରୀ" ।

ଅସହଯୋଗ ବାର୍ତ୍ତା ବହନ କରି ତାଙ୍କର କବିତା ଆଣିଦେଲା ଦେଶବାସୀଙ୍କ ଉଦ୍ଦେଶ୍ୟରେ ଏକ ଅଭିନବ ସନ୍ଦେଶ ।

"ଗ୍ରାଉଡ଼ିଦିଅ ଭାଇ ସବୁ ବାବୁଗିରି
ଛାଡ଼ି ଆସ ଏବେ ଗୋଲାମ ଚାକିରି
ଅତି ବିକଳରେ ମାତା ଡାକେ ପୁଅ
ଅଣ୍ଟା ଭିଡ଼ି ଭାଇ ତାକୁ କରି ଉଅ ।"

କବି କୁନ୍ତଳା କୁମାରୀ ଲେଖିଲେ 'ହୁଙ୍କାର' । ସତେ ଯେପରିକି ତାହା ଅନନ୍ତର ପ୍ରେରଣା ଆଣିଦେଲା ଜାତୀୟ ଜୀବନରେ । ଏ ଦେଶର ତରୁଣ ସନ୍ତାନ ନବଯୌବନର ଉନ୍ମାଦନାରେ ମାତୃଅପମାନ ଦୂର କରିବା ପାଇଁ ଆଗେଇଆସିବେ ବୋଲି କବି ଆଶାପ୍ରକାଶ କରିଥିଲେ । ଭାରତମାତାର ପତାକା ତଳେ ତାର ସନ୍ତାନମାନେ ଏକାଠି ହୋଇ ବିଦେଶୀଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଆଗେଇ ଆସନ୍ତୁ ବୋଲି କବି କୁନ୍ତଳା କୁମାରୀ ଆବେଗମୟ ଭାଷାରେ ଶୁଣାଇଥିଲେ—

"ଅଯୋଗ୍ୟ ଆମେ ଲୋ ଆମ ଅରଜନ
ପର ପାଦ ତଳେ ଲୋଟୁଛି
ଆପଣା ବେକକୁ ହାଣି କୁରାଢ଼ିରେ
ଖାଇ ଗଳା ଖାଇ କାଟୁଛି ।

ଥିଲେ ପ୍ରେମ ଆଉ ନାହିଁ ଆମ ଘରେ
ଖେଳୁଛୁଁ ଆପଣା ସୋଦର ରକ୍ତରେ ।
ହିନ୍ଦୁ ମୁସଲମାନ, ଦୁଇ ବାହୁ ତୋର
ଦୁହିଁଙ୍କ ଭିତରେ ଦ୍ୱନ୍ଦ୍ୱ ଯୁଦ୍ଧ ଘୋର
ଚାଟ ବିଦେଶୀଙ୍କୁ ବରଣ କରିଣ
ଜଗତରେ ହେଲୁ ହସା
ଆମରି କରମ ଆମକୁ ଖାଉଛି
କେ ଫେଡ଼ିବ ଆମ ଦଶା ?"

( ସ୍ଫୁଲିଙ୍ଗ—ଭାରତମାତା—୧୯୨୭ )

ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ତରୁଣ ବୀରକିଶୋରଙ୍କ ପ୍ରାଣରେ ଯେଉଁ ସ୍ୱରାଜ୍ୟ ଭାବନା ଜାଗ୍ରତ ହୋଇଥିଲା, ତାହା ଇଂରେଜ ସରକାରୀ କଲମର ପ୍ରଲୋଭନରେ ଅଟକି ରହିପାରିଲା ନାହିଁ । ସେ ସେତେବେଳେ ସରକାରୀ ଦପ୍ତରରେ ମସୀଜୀବୀ ହୋଇ ସୁଦ୍ଧା ଛଦ୍ମ ନାମରେ ପ୍ରକାଶ କରିଦେଲେ 'ମୋହନ ବଂଶୀ' (୧୯୨୨) ଯାହାକୁ ଇଂରେଜ ସରକାର ବାଜ୍ୟାପ୍ତ କରିବାକୁ ବାଧ୍ୟ ହୋଇଥିଲେ । ତହିଁରେ ବୀରକିଶୋର ଲେଖିଥିଲେ—

"କର୍ମବୀର ହୋଇ ଏବେ କର୍ମ କର ଭାଇ
ଧର୍ମ ଯୋଗୁ ଦିଅ ଆଜି ଶରୀର ପତାଇ ।
ଧର୍ମଯୋଗୁ ପାଳ ଆଜି ସ୍ୱଦେଶର ବ୍ରତ
କର୍ମ ଯୁଗେ ଦେଶହିତେ ହୁଅ ଭାଇ ରତ ।
× × ×
ହୋମାନଳ ପରି ମୋର ଜୀବ ଲିଭିଯାଉ
ହିମାଳୟ ଗିରି ମୋର ସ୍ୱାଧୀନତା ପାଉ ।
× × ×
ଏ ଜୀବନ ଦାନ କଲି ଦେଶଲାଗି ଭାଇ
ଆଗ ପଛ କଥା କିଛି ବାରେ ଚିନ୍ତା ନାହିଁ ।"

( ମୋହନ ବଂଶୀ )

ଚଉଆଡ଼େ ବଜ୍ର ନିନାଦରେ ସତ୍ୟାଗ୍ରହୀ ଯୁବକମାନେ ଗାଇଲେ "ସ୍ୱରାଜ ଭିକ୍ଷା ଫଲବନ୍ତ୍ ହୋଗା ଗ୍ରେଡ଼କେ ଆଓ ଗୋଲମିଁ ।" ଜାତୀୟ ଆନ୍ଦୋଳନର ଏହି ଘଡ଼ସନ୍ଧି ମୁହୂର୍ତ୍ତରେ ବୀରକିଶୋର ସରକାରୀ ଚାକିରି ଛାଡ଼ିଦେଇ ପୂର୍ଣ୍ଣପ୍ରାଣରେ ଡେଇଁପଡ଼ିଲେ ସ୍ୱରାଜ୍ୟ ସଂଗ୍ରାମର ମଇଦାନକୁ । ସ୍ୱନାମଧନ୍ୟ ହରେକୃଷ୍ଣ ମହତାବ ଜାତୀୟ ଆନ୍ଦୋଳନକୁ

ଅଗ୍ରେଇ ନେବାପାଇଁ ପ୍ରକାଶ କଲେ 'ପ୍ରଜାତନ୍ତ୍ର' ସାପ୍ତାହିକ ପତ୍ରିକା ୧୯୨୩ ଖ୍ରୀଷ୍ଟାବ୍ଦରେ । ଏହି ପ୍ରକାଶନରେ ମହତାବଙ୍କ ପ୍ରଧାନ ସହଯୋଗୀ ଥିଲେ ଜାତୀୟ କବି ନନ୍ଦକିଶୋର । ପ୍ରଜାତନ୍ତ୍ର ପ୍ରଥମେ କଟକରୁ ପ୍ରକାଶିତ ହୋଇ ପରେ ବାଲେଶ୍ୱରରୁ ଆତ୍ମପ୍ରକାଶ କଲା । ପ୍ରଜାତନ୍ତ୍ର ଇଂରେଜ ସରକାରଙ୍କ ବିଷ ଦୃଷ୍ଟିରେ ପଡ଼ିଲା । 'ପ୍ରଜାତନ୍ତ୍ର' ହେଲା ଜାତୀୟ ଆନ୍ଦୋଳନର ପ୍ରମୁଖ ବାର୍ତ୍ତାବହ । ୧୯୨୪ ସାଲରେ ମହାତ୍ମା ଗାନ୍ଧୀ ଓଡ଼ିଶାରେ ପଦଯାତ୍ରା କଲେ । ଓଡ଼ିଶାର ପୁରପଲ୍ଲୀରେ ଦୀନ ଜନତାର ଦୁର୍ଦ୍ଦଶା ଅବଲୋକନ କରି ଗାନ୍ଧିଜୀ ବିଚଳିତ ହୋଇପଡ଼ିଲେ । ତାଙ୍କର ହୃଦୟ ହାହାକାର କରି ଉଠିଲା । ଗାନ୍ଧିଜୀ ଅନୁଭବ କଲେ ଯେ ବିଦେଶୀ ଇଂରେଜ ରାଜଶକ୍ତିର ଅତ୍ୟାଚାର ସୀମା ଲଙ୍ଘନ କରିସାରିଲାଣି । ନିଜ ଘରେ ଆମେ ପ୍ରବାସୀ ହୋଇ ଜୀବନ ଅତିବାହିତ କରୁଛେ । ନିଜ ଜମିରେ ଆମର ଅଧିକାର ନାହିଁ । ପ୍ରକୃତିଦତ୍ତ ସମୁଦ୍ରରୁ ଲୁଣ ମାରିବାର ସୁଯୋଗ ଇଂରେଜମାନେ ଆମଠୁ ଛଡ଼ାଇ ନେଇଛନ୍ତି । ଗାନ୍ଧିଜୀଙ୍କର ଆହ୍ୱାନ ମିଳିଲା ୧୯୩୦ ସାଲରେ ଲୁଣମରା ଆନ୍ଦୋଳନ ଆରମ୍ଭକରିବା ପାଇଁ । ଗାନ୍ଧିଜୀ ପୂର୍ବରୁ କହିଥିଲେ—ଆମେ ବିଦେଶୀ ବସ୍ତ୍ର ବର୍ଜନକରିବା ଏବଂ ହାତରେ ସୂତାକାଟି ଲୁଗା ବୁଣି ପିନ୍ଧିବା । ସେଥିପାଇଁ ସେ କାଳରେ ଗୋପବନ୍ଧୁ ଦେଶବାସୀଙ୍କୁ ଶୁଣାଇଥିଲେ—

"ବିଦେଶୀ ଅମେଧ୍ୟ ବହି ଗୁଡ଼ ଆଗେ
ହାତ ସୂତା ଲୁଗା ଏ ସ୍ୱରାଜ-ଯାଗେ ।"
( ବନ୍ଦୀର ଆତ୍ମକଥା )

କାନ୍ତକବି ଲକ୍ଷ୍ମୀକାନ୍ତ ସମସ୍ୱରରେ ଗାଇଲେ—

"ଭାଇ ହେ ଏବେ ଅରଟ କାଟ
ଆଉ କିଛି ଭରସା ନାହିଁ
ଅରଟ ଏକା ମୁକତି ବାଟ ।"
( କାନ୍ତ ସାହିତ୍ୟମାଳା—ପୃ ୧୧୮୧ )

୧୯୩୦ ସାଲରେ ମହାତ୍ମା ଗାନ୍ଧୀଙ୍କର ଐତିହାସିକ ଡାଣ୍ଡିଯାତ୍ରା ଆରମ୍ଭ ହେଲା । ଭାରତର ପ୍ରତ୍ୟେକ ସମୁଦ୍ର ଉପକୂଳ ଅଞ୍ଚଳରେ ଲୁଣମରା ଅଭିଯାନ ଆରମ୍ଭ ହେଲା । ଓଡ଼ିଶାରେ ମଧ୍ୟ ବାଲେଶ୍ୱରର ଇଞ୍ଚୁଡ଼ି ହେଲା ଲୁଣମରା ଅଭିଯାନର କେନ୍ଦ୍ରସ୍ଥଳୀ । ପଲ୍ଲୀ-କବି ନନ୍ଦକିଶୋର ଏହି ଲୁଣ ସମ୍ପର୍କରେ ଲେଖିଥିଲେ—

'ମୋ ବାଡ଼ି ଭିତରେ ଲୁଣର ଅମଳ
ଅଲଣା ଖାଆନ୍ତି ଦୁଃଖୀ ଓଡ଼ିଆ
ଲୁଚିକି ଖାଇଲେ ପକଡ଼ି ନିଅନ୍ତି
ଖୋଲ୍‌ଟି କହି ତାଙ୍କୁ ନାଳପଗଡ଼ିଆ ।'
( ନନ୍ଦକିଶୋର ଗ୍ରନ୍ଥାବଳୀ—ପୃ ୩୯୮ )

ଜାତୀୟ ଆନ୍ଦୋଳନର ବାନରସେନାମାନେ ଗର୍ବସ୍ୱରେ ବୀରକିଶୋରଙ୍କ ଗୀତ ଗାଇ ବୁଲିଥିଲେ ଇଂରେଜ ସଙ୍ଗୀନ ମୁନର ମୁକାବିଲା କରିବାପାଇଁ—

"ଲୁଣ ମାରିବାକୁ ଚାଲ ଭାଇ
 ମହାତ୍ମା ଆଦେଶ ପାଳି ହେ ।
ଆମ ଘର ପାଖେ ବେଢ଼ିଛି ସାଗର
ଲୁଣ ମୁଠେ ପାଇଁ ନାହିଁ ଅଧିକାର !
ଏ ଅନ୍ୟାୟ, ଏ ଅନୀତି ବୁଝି ଭାଇ
 ସହିଥିବା କେତେକାଳ ହେ ।"

କବି କୁନ୍ତଳାକୁମାରୀଙ୍କ "ଆହ୍ୱାନ" ପୁସ୍ତକ ଲେଖାଯାଇଥିଲା ଏହି ୧୯୩୦ ସାଲରେ ସତ୍ୟାଗ୍ରହ ସଂଗ୍ରାମରେ ଯୋଗଦେବା ପାଇଁ । ଇଂରେଜ ସରକାର ଏହି ପୁସ୍ତକକୁ ବାଜ୍ୟାପ୍ତ କରିଦେଇଥିଲେ । କୁନ୍ତଳାକୁମାରୀ ଚେତାଇ ଦେଇଥିଲେ ଦେଶବାସୀଙ୍କୁ "ନିଜ ଦେଶେ ଆଜି ଆମେ ନିର୍ବାସିତ" । ପୁନଶ୍ଚ ଆମରି ଘରେ 'ପଖାଳ ଗଣ୍ଡାକୁ ଟିକେ ନାହିଁ ଲୁଣ' । ଅଥଚ ଏହି ପରିସ୍ଥିତିରେ ଭାରତର ତରୁଣ ସଂଗ୍ରାମ ପାଇଁ କୁଣ୍ଠିତ କାହିଁକି ? ଆମେ ଏହି ସରକାରର ତୋଷାମଦି କରି ନିଜ ପ୍ରତି ଏବଂ ମାତୃଭୂମି ପ୍ରତି ଅନ୍ୟାୟ କରିଯାଉଛେ ସିନା !! ଅହିଂସ ଉପାୟରେ ଆଇନ ଅମାନ୍ୟ କରିବା ପାଇଁ କୁନ୍ତଳା-କୁମାରୀ ଆହ୍ୱାନ ଦେଇଥିଲେ—

"ଭାରତ ମାତାର ବୀର ପୁତ୍ରଗଣ
ରଣ ସ୍ଥଳ-ଧୂଳି କର ଆଲିଙ୍ଗନ ।
ଶାନ୍ତି ଅସ୍ତ୍ର ତବ ଏ ଶାନ୍ତି ସମରେ
ବକ୍ଷ ମେଲି ଠିଆ ହେବ ଅକାତରେ ।
ଖୋଲି ଘୁଡି ପଡ଼େ କମାଣ ବନ୍ଧୁକ
ଦେଖାଇବେ କେତେ ଗୁଳିର କଉତୁକ ।
ହଣା ହେବ ବୀର ଶିର ଗୋଟି ଗୋଟି
ତୁମ ରକ୍ତ ଭୂଇଁ ତଳେ ଯିବ ଲୋଟି ।
ଗଙ୍ଗାଧାରୀ ସଙ୍ଗେ ରଙ୍ଗାଧାରୀ ମିଶି
ପୋଛି ଦେବ ଦୁଃଖ ଅତ୍ୟାଚାର-ରାଶି ।"

( ଆହ୍ୱାନ—୧୯୩୦ )

ଲୁଣମରା ଅଭିଯାନ କାଳର ଅନୁଭୂତ ଜଣେ ବାନରସେନାଙ୍କର ଜୀବନ ସ୍ମୃତିରୁ ଲକ୍ଷ୍ୟ କରିଯାଇପାରେ । ୧୯୩୦ ମସିହା ଭାରତ ଇତିହାସରେ ଏକ ଉଲ୍ଲେଖନୀୟ ବର୍ଷ ।

ଏହି ବର୍ଷ ଇଂରେଜ ସରକାର ବିରୁଦ୍ଧରେ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା । ଗାନ୍ଧିଜୀଙ୍କ ନେତୃତ୍ୱରେ ଐତିହାସିକ ଦାଣ୍ଡି ଅଭିଯାନ ଆରମ୍ଭହେବା ସଙ୍ଗେ ସଙ୍ଗେ ସାରା ଭାରତବର୍ଷରେ ଏକ ଅପୂର୍ବ ଜନଜାଗରଣ ଦେଖାଦେଲା । ବର୍ଷ ବର୍ଷ ଧରି ପରାଧୀନତାର ଶୃଙ୍ଖଳରେ ବାନ୍ଧି ହୋଇଥିବା ଏ ଜାତି ଚେଇଁ ଉଠିଲା ନବ ଉନ୍ମାଦନାରେ, ନବୀନ ପ୍ରେରଣାରେ । ବିଳାତି ଲୁଗା ବଏକଟ୍ ହେଲା । ମଦ, ଗଞ୍ଜେଇ, ଅଫିମ ଦୋକାନ ଆଗରେ ଦଳ ଦଳ ହୋଇ ସ୍ୱେଚ୍ଛାସେବୀମାନେ ପିକେଟିଂ ଆରମ୍ଭ କଲେ । ଦେଶସାରା ଆନ୍ଦୋଳନ ସୃଷ୍ଟି ହେଲା । ପୋଲିସର ଅତ୍ୟାଚାର, ଅନାଚାର, ବ୍ୟଭିଚାର ଦିନକୁଦିନ ଅତି ନଗ୍ନରୂପ ଧାରଣ କଲା । ଛାତ୍ରମାନେ ସ୍କୁଲ କଲେଜ ଛାଡ଼ିଲେ । କର୍ମଚାରୀମାନେ ଅଫିସ ବର୍ଜନ କଲେ । ଧନୀମାନେ ନିଜର ବିଳାସବ୍ୟସନ ତେଜି ରାଜପଥରେ ଆସି ଠିଆ ହେଲେ । ଦରିଦ୍ର, ଚାଷୀ, ମୂଲିଆ ଓ ଖଟିଖିଆ ସେମାନଙ୍କ କ୍ଷେତ, ଖମାର, କାରଖାନା, କୁଡ଼ିଆ ଓ ପରିବାରର ମାୟାମମତା ସବୁ ପଛକୁ ପକାଇ ଜାତିର ଏ ମହାନ୍ ଯଜ୍ଞରେ ପୁରୋଧା ହେଲେ । ନାରୀମାନଙ୍କ ମଧ୍ୟରେ ଏ ଆନ୍ଦୋଳନ ଅଭୂତପୂର୍ବ ରୂପ ନେଲା । ସତ୍ୟାଗ୍ରହ ଦିନକୁ ଦିନ ପ୍ରବଳରୁ ପ୍ରବଳତର ହେଲା । ''

ଆନ୍ଦୋଳନ ତୀବ୍ରତର ହେଲା । ବାଲେଶ୍ୱରରେ ସାପ୍ତାହିକ 'ପ୍ରଜାତନ୍ତ୍ର' ଦୈନିକରେ ପରିଣତ ହେଲା । ସରକାର ନିର୍ମମଭାବରେ ଅମାନତ ଦାବିକରିବାରୁ ସ୍ୱାଧୀନତା ଆସିବା ପର୍ଯ୍ୟନ୍ତ ତାହା ବନ୍ଦ ହୋଇଗଲା । କଟକରେ ରାଜକୃଷ୍ଣ ବୋଷଙ୍କ ସମ୍ପାଦନାରେ ପ୍ରକାଶିତ ହେଉଥାଏ 'ସ୍ୱରାଜ୍ୟ' । ଏହି ଆନ୍ଦୋଳନକୁ ଉତ୍ସାହିତ କରିବା ପାଇଁ ସ୍ୱରାଜ୍ୟକୁ କିଛିଦିନ ପାଇଁ ଦୈନିକ ମଧ୍ୟ କରାଯାଇଥିଲା । ସରକାର ଅନ୍ୟ ଉପାୟ ନ ଦେଖି ଏହାର ମଧ୍ୟ ପ୍ରକାଶନ ବନ୍ଦ କରିଦେଲେ । ଯେ କୌଣସି ଉପାୟରେ ଲୋକମତକୁ ଚପାଇଦେବା ଥିଲା ଇଂରେଜମାନଙ୍କର ଉଦ୍ଦେଶ୍ୟ । ମାତ୍ର ଏଥିରେ କବି ବୀରକିଶୋର ଚୂପ୍ ହୋଇ ବସିଥାନ୍ତେ । ସେ ଲେଖିଲେ ଗୀତ ''ଦରିଆ ଦଖଲ କରିଯିବ କିଏ ଆସ ।'' ଗୀତଟି ବାନରସେନାଙ୍କ କଣ୍ଠରେ ନିଆଁର ହୋରିଖେଳ ସୃଷ୍ଟି କରିଦେଲା ।

''ଆସରେ ଆଜି ଆସ
ଦରିଆ ଦଖଲ କରିଯିବ କିଏ ଆସ ।
କାଳ କଳିଯୁଗ ହେଲା ବଳିହାର
ମନୁଷ୍ୟ କରଇ ମନୁଷ୍ୟ ଶିକାର
ବିଦେଶୀ ଶାସନ କଲା ଶ୍ମଶାନ
ଆମ ଦେବତା କନକ ଦେଶ
ଆସରେ ଆଜି ଆସ ।

---

୨୨ । ସ୍ୱାଧୀନତାର ସୂରଭି—ବୈକୁଣ୍ଠନାଥ ମହାନ୍ତି—୧୯୮୫—ପୃ ୧୦

ଅସ୍ଥିର ଅନଳ ଘରେ ଘରେ ଜଳେ
ଜୀଅନ୍ତା ମୂର୍ତ୍ତିର ହେଲେ ରକ୍ତଜଳେ
ସବୁ କାଢ଼ିନିଏ କୂଟ ସରକାର
ସତ କହିଲେ ଲାଗିଲା ଦୋଷ
ଆସରେ ଆଜି ଆସ ।
ଥିଲେ ତ ପଠାଣ ଥିଲେ ମରହଟ୍ଟା
କେହି ତ ନ ଥିଲେ ଏଡ଼େ ଚତାକଟା
ନଈଁ ପାଣି ଚୂଲି ସ୍ୱହଲ ସବୁଠି
କା'ର ନ ଥିଲା ଟିକସ ଶୋଷ
ଆସରେ ଆଜି ଆସ ।

× × ×

ଏ ଶାସକ ଆଜି କରି ଖଣ୍ଡ ଖଣ୍ଡ
ପ୍ରଜାହାତେ ଦେଇଯିବା ରାଜଦଣ୍ଡ
ତଳେ ବସୁମାତା ଉପରେ ଦେବତା
ସଦା ଗାଇବେ ଆମର ଯଶ
ଦଉଆ ଦଖଲ କରିଯିବ କିଏ ଆସ ।"

ଲୁଣ ମାରିବା ପାଇଁ ସତ୍ୟାଗ୍ରହୀମାନେ ଦଳକୁ ଦଳ କଟକରେ ସ୍ୱରାଜ୍ୟ ଆଶ୍ରମରେ ଏକାଠି ହେଉଥାଆନ୍ତି । ପ୍ରତିଦିନ କାଠଯୋଡ଼ି ନଦୀ ବାଲିରେ ସଭା ହେଉଥାଏ । ଲୋକମତ ଜାଗ୍ରତକରିବା ପାଇଁ ସତ୍ୟାଗ୍ରହୀମାନେ ପଟୁଆର କରି ବୀରବାବୁଙ୍କ ଗୀତ ବୋଲି ବୁଲୁଥାଆନ୍ତି । ଏହି ସମୟରେ ସତ୍ୟାଗ୍ରହକୁ ଦମନକରିବା ପାଇଁ ଡେପୁଟି ମାଜିଷ୍ଟ୍ରେଟ ମାଧବ ମିଶ୍ରଙ୍କ ଉପରେ ଦାୟିତ୍ୱ ଦିଆଯାଇଥିଲା । ସରକାରୀ ଆଦେଶ ପାଳନକରିବା ପାଇଁ ମାଧବ ମିଶ୍ରେ ବାନରସେନାଙ୍କୁ ଉପସ୍ଥିତ କରାଇଲେ । ଗୋଟିପୁଅ ପିଲାଙ୍କୁ ଉପସ୍ଥିତ କରି ରାସ୍ତାରେ ଗୀତ ବୋଲାଇ ଶୁଣାଇଲେ—

'ଲୁଣ ମାରିବାକୁ ଯିବ
ଯେବେ ପିଠି ହେବ ଗଲଗଲ ହେ
ଛେଚା ଖାଇ ତୁମ୍ଭେ ଜେଲଖାନା ଯିବ
କତା ପିଟି, ଘଣା ପେଲି ମରିବ
ତୁମ ପିଠିରୁ ଉଠିବ ଛାଲ ହେ ।' (୧୩)

---

୧୩ । ସ୍ମୃତିର ସୁରଭି—ବୈକୁଣ୍ଠନାଥ ମହାନ୍ତି—୧୯୮୫—ପୃ ୧୨

ସରକାରୀ କର୍ତ୍ତୃପକ୍ଷ ନିର୍ମମ ଭାବରେ ଦମନଲୀଳା ଚଳାଇଲେ । ପୁଲିସମାନଙ୍କୁ ଧସାଇ ସବୁ ଲଗାଇଦିଆଯାଉଥାଏ । କୋମଳମତି ବାନରସେନା ସତ୍ୟାଗ୍ରହୀଙ୍କୁ କଠିନ ବେତମାଡ଼ ଖାଉଥାଏ । ସତ୍ୟାଗ୍ରହୀଙ୍କ ମନରେ ନୈତିକ ବଳ ଆଣିଦେବା ପାଇଁ ବୀରବାବୁ ଗୀତ ଲେଖିଲେ—

"ତୁମେ ମାର କେତେ ବେତ ମାରିବ
ଦେଶ ଲାଗି ଆମେ ଜୀବନ ଦେଇଛୁ
ତୁମେ କି ଆମକୁ ପାରିବ ?
ଆମେ ଡରନାହୁଁ ଘୋର ମରଣେ
ମନ ରଖିଅଛୁ ବନ୍ଧୁ ଚରଣେ ।
ତୁମ ଆମ କଥା ତାଙ୍କ ମିଶଲରେ
ଦେଖେଣି ବିଘ୍ନର ପଞ୍ଜିବ ।"

ଏହି ଗୀତ ଗାଇ ବାନରସେନା ହସି ହସି ବେତମାଡ଼ ଖାଇବା ପାଇଁ ହାତ-ପତାଇ ଦେଉଥିଲେ । ବେତମାଡ଼ରେ ହାତ ପାପୁଲି ନୋଳା ଫାଟି ରକ୍ତ ଝୁରୁବୁରୁ ହେଉଥାଏ । ତଥାପି ସତ୍ୟାଗ୍ରହୀମାନେ ଥାଆନ୍ତି ଅଟଳ ଏବଂ ଅଚଳ ।

ଏହି ଜାତୀୟ ଆନ୍ଦୋଳନ ଯୁଗରେ ବୀରକିଶୋର ଜଣେ ସାଧାରଣ ସତ୍ୟାଗ୍ରହୀ ନ ଥିଲେ । ସେ ଥିଲେ ବିପ୍ଳବର ଅଗ୍ରଦୂତ । ବହୁ କବି ଏ ଯୁଗରେ ସ୍ୱାଧୀନତାର ମନ୍ତ୍ରଗାନ କରିଥିଲେ ହେଁ ବୀରକିଶୋର ଥିଲେ ସର୍ବଶ୍ରେଷ୍ଠ ମାନ୍ତ୍ରିକ । ତାଙ୍କର ଗୀତଗୁଡ଼ିକ ସତ୍ୟାଗ୍ରହୀ-ମାନଙ୍କ କଣ୍ଠରେ ଗାନ କରାଯାଇ ଯେଉଁ ପ୍ରେରଣା ଆଣିଦେଉଥିଲା, ତାହା ପାଶୁପତ ଅସ୍ତ୍ର ପରି ଥିଲା ଅପରାଜେୟ ଏବଂ ଅଲଙ୍ଘନୀୟ ।

ଏହି ବୈପ୍ଳବିକ ବାଣୀ ଏପରି ଯୁଗାନ୍ତକାରୀ ଥିଲା ଯେ କେତେକ ଗ୍ରାମ୍ୟ କବି ମଧ୍ୟ ଆପେ ଆପେ ସ୍ୱର ଦେଇ ଗୀତ ଯୋଡ଼ି ଦେଉଥିଲେ ଏବଂ ତାହା ଥିଲା ସତ୍ୟାଗ୍ରହୀ-ମାନଙ୍କର ପ୍ରେରଣାର ଉତ୍ସ ।

'ଦିନେ ଏଇ ମାଟି ଉଲୁସି ଉଠିବ
ଫୁଟିବ କନକ କଳି
ରାଇଜେ ରାଇଜେ ଡେଙ୍ଗୁରା ବାଜିବ
ସେ ଦୃଶ୍ୟ ଦେଖିବା ପାଇଁ' । (୧୪)

---

୧୪ । ସ୍ୱାଧୀନତା ସଂଗ୍ରାମୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣାଙ୍କ ସ୍ମୃତିଚାରଣରୁ ଏହି ପଦଟି ଗ୍ରହଣ କରାଯାଇଛି ।

ସତ୍ୟାଗ୍ରହୀମାନଙ୍କୁ ଉତ୍ତେଜିତକରିବା ପାଇଁ କିଛି ହିନ୍ଦୀ ଗୀତ ମଧ୍ୟ ବୋଲା-ଯାଉଥିଲା । ଜାତୀୟ ପତାକାର ଉନ୍ନତ ଓ ସମ୍ମାନ ରକ୍ଷାକରିବା ପ୍ରତ୍ୟେକ ସତ୍ୟାଗ୍ରହୀର କର୍ତ୍ତବ୍ୟ । ଏଥିପାଇଁ ସେ ଯେ କୌଣସି ତ୍ୟାଗ ସ୍ୱୀକାରକରିବା ପାଇଁ ପ୍ରସ୍ତୁତ । ସେ ବୋଲୁଥିଲା ପ୍ରାଣ ଓ ମନରେ ତରଙ୍ଗ ସୃଷ୍ଟି କରି—

"ଝଣ୍ଡା ହେ ପ୍ରାଣ ହମାରା
ପ୍ରାଣୋ ସେ ବଢ଼କର ପ୍ୟାରା ।"
"ଯୁଦ୍ଧ ହେ ରାଷ୍ଟ୍ର ଧ୍ୱଜା ଧନ ମେରା
ଜୀବନ ବଲିଦାନ କରେଙ୍ଗେ
ଶୂଲୀ ପର ଉଛଲ ଚଢ଼େଙ୍ଗେ
ବନ୍ଧନସେ ନହୀ ଡରେଙ୍ଗେ
ସବକୁଛ ସାନନ୍ଦେ ସହେଙ୍ଗେ
ପର ଝଣ୍ଡା ନହୀ ତ୍ୟଜେଙ୍ଗେ ।"

ଜାତୀୟ ଚେତନା ଯୁଗର ଏହାହିଁ ଥିଲା ମର୍ମବାଣୀ, ଯେଉଁ ଉଦ୍‌ଘୋଷଣା କାଳରେ ବୀରକିଶୋରଙ୍କ କବିପୁରୁଷର ଅଭ୍ୟୁଦୟ ହୋଇଥିଲା ।

---

# ବୀରକିଶୋରଙ୍କ ଗୀତିକବିତାର ଭୂମିକା

ଲୋକମାନ୍ୟ ତିଲକ ମହାରାଜା ପ୍ରାଣର ଆବେଗରେ ଭାରତବାସୀଙ୍କୁ ଆହ୍ୱାନ ଜଣାଇ କହିଥିଲେ, "ସ୍ୱାଧୀନତା ଆମର ଜନ୍ମଗତ ଅଧିକାର । ଏହି ଅଧିକାରରୁ କେହି ଆମକୁ ବଞ୍ଚିତ କରିପାରିବେ ନାହିଁ । ଯେ କୌଣସି ଉପାୟରେ ଆମ୍ଭମାନଙ୍କୁ ସ୍ୱାଧୀନତା ହାସଲ କରିବାକୁ ହେବ ।"

ସ୍ୱାଧୀନତା ସଂଗ୍ରାମର କାହାଣୀ ଆଜି ଇତିହାସ ହୋଇଯାଇଛି । ଇତିହାସ ପାଠକମାନେ ଜାଣନ୍ତି, ଭାରତ ପରି ବିଶାଳ ଦେଶ ସମଗ୍ର ଇତିହାସରେ କେବେହେଲେ ଗୋଟିଏ ରାଷ୍ଟ୍ରୀୟ ପତାକା ତଳେ ଏକାଠି ହୋଇପାରି ନ ଥିଲା । ଅଶୋକ ଏବଂ ବାବରଙ୍କ ପରି ସମ୍ରାଟଗଣ ଏ ଦିଗରେ କିଛି ଉଦ୍ୟମ କରି ମଧ୍ୟ ସଫଳତା ଅର୍ଜନ କରିପାରି ନ ଥିଲେ । ସେଥିପାଇଁ ଯୁଗେ ଯୁଗେ ଏହି ବିଶାଳ ଦେଶ ନାନା ଖଣ୍ଡରେ ବିଭକ୍ତ ହୋଇ ସ୍ୱାଧୀନ ନରପତିମାନଙ୍କଦ୍ୱାରା ଶାସିତ ହେଉଥିଲା । ସବୁ ସମୟରେ ରାଜ୍ୟ ରାଜ୍ୟ ମଧ୍ୟରେ ଅନ୍ତର୍ବିବାଦ ଏବଂ ଅନ୍ତର୍ଯୁଦ୍ଧ ଅବ୍ୟାହତ ରହିଥିଲା । ତାରି ସୁଯୋଗ ଗ୍ରହଣ କରି ଭାରତ ବାହାରୁ ବିଦେଶୀ ଆକ୍ରମଣକାରୀଗଣ ସବୁ କାଳରେ ଭାରତର ଦେଶ ଭିତରକୁ ଭିଣ ଅଭିଯାନ କରି ବାରମ୍ବାର ପଦାନତ କରିଛନ୍ତି, ଲୁଣ୍ଠନ, ଶୋଷଣ ଓ ଅତ୍ୟାଚାର କରି ବିଦାୟ ନେଇଛନ୍ତି । ଇତିହାସ ପୃଷ୍ଠାରେ ଏ ପର୍ଯ୍ୟନ୍ତ ସ୍ୱଭାବ କଲେ ଇଂରେଜମାନେ ହେଉଛନ୍ତି ସର୍ବଶ୍ରେଷ୍ଠ ବୈଦେଶିକ ଜାତି, ଯେଉଁମାନେ ଦୀର୍ଘକାଳ ଏ ଦେଶକୁ ପରାଧୀନ କରି ଲୁଣ୍ଠନ ଚଳାଇଥିଲେ । ସେହି ଇଂରେଜମାନଙ୍କ ବିରୁଦ୍ଧରେ କଂଗ୍ରେସ ନେତୃତ୍ୱରେ ଦୀର୍ଘକାଳ ସ୍ୱାଧୀନତା-ସଂଗ୍ରାମ ଅବ୍ୟାହତ ରହି ୧୯୪୭ ଅଗଷ୍ଟ ପନ୍ଦର ତାରିଖ ଦିନ ଦେଶ ସ୍ୱାଧୀନତା ହାସଲ କରିଥିଲା ।

ଦୀର୍ଘକାଳର ପରାଧୀନତା ଜାତୀୟ ଜୀବନକୁ ପଙ୍ଗୁ, ହୀନମନ୍ୟ ଏବଂ କଳଙ୍କିତ କରିଦିଏ । ଜାତୀୟତାବୋଧ ଲୋପ ହୋଇଯାଏ । ସ୍ୱାଭିମାନ ପାଇଁ ମନରେ ଇଚ୍ଛାଟି ସୃଷ୍ଟି ହୁଏ ନାହିଁ । ହୀନମନ୍ୟତାର ଗ୍ଲାନିରେ ସମଗ୍ର ଦେଶ ଉଦ୍‌ବେଳିତ ହୋଇ ହେଉଥାଏ ।

ସମଗ୍ର ଊନବିଂଶ ଶତାବ୍ଦୀଟି ଆମ ଦେଶ ପକ୍ଷରେ ଏକ ଅନ୍ଧକାରର କାଳ । ସେତେବେଳକୁ ଇଂରେଜ ଶାସନର ଶୋଷଣ ଓ ଅତ୍ୟାଚାର ଚରମ ସୀମାରେ ଉପନୀତ ହୋଇଯାଇଥାଏ । ଜନଜୀବନରେ ଶାନ୍ତି ଓ ସଂହତି ସ୍ୱପ୍ନ ପ୍ରାୟ ପ୍ରତୀୟମାନ ହେଉଥାଏ । ଏହି ଶତାବ୍ଦୀର ଶେଷାର୍ଦ୍ଧରେ ନବଜାଗରଣ (ରେନେସାଁ) ଆନ୍ଦୋଳନର ସୁଫଳ ମିଳିଥାଏ । ପାଶ୍ଚାତ୍ୟ ଶିକ୍ଷାର ପ୍ରବର୍ତ୍ତନ ଯୋଗୁଁ ଦେଶର ନୂତନ ଶିକ୍ଷିତଶ୍ରେଣୀ ମଧ୍ୟରେ

ସୃଷ୍ଟି ହେଲା ଏକ ଅପୂର୍ବ ଆନ୍ଦୋଳନ । ସମାଜ, ଧର୍ମ, ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ଯୁଗଯୁଗର ଗତାନୁଗତିକ ଅନୁଚିନ୍ତାକୁ ବିଦାୟ ଦେଇ ଲୋଡ଼ା ହେଉଥିଲା ଆଉ ଏକ ନୂତନ ଦୀକ୍ଷା, ଯାହାକି ଦେଶ ଓ ସମାଜକୁ ନବଜନ୍ମ ପ୍ରଦାନକରିବ; ନବଧର୍ମରେ ଅନୁପ୍ରାଣିତ କରାଇବ ଏହି ବିଶାଳ ଭାରତବର୍ଷକୁ !

ପ୍ରଥମ କରି ସମଗ୍ର ଭାରତବର୍ଷରେ ଦେଶମାତାର ମୁକ୍ତି ପାଇଁ ସମୂହ ବ୍ୟାକୁଳତା ପ୍ରକାଶିତ ହେଲା । ବିଭିନ୍ନ ଅଞ୍ଚଳର ସାହିତ୍ୟରେ ତାହାର ଝଲକ ସୃଷ୍ଟିହେବାକୁ ଲାଗିଲା । ୧୮୮୫ ଖ୍ରୀଷ୍ଟାବ୍ଦରେ କଂଗ୍ରେସର ପ୍ରତିଷ୍ଠାହେବା ପୂର୍ବରୁ ଋଷିପ୍ରାଣ ବଙ୍କିମଚନ୍ଦ୍ର ୧୮୮୨ ଖ୍ରୀଷ୍ଟାବ୍ଦରେ ଲେଖିଥିଲେ 'ବନ୍ଦେମାତରଂ' । ସୁଖର କଥା ଏହି ଯେ 'ବନ୍ଦେମାତରଂ' ଗୀତଟି ଭାରତର ଜାତୀୟ ଆନ୍ଦୋଳନ ରଙ୍ଗମଞ୍ଚରେ ଦୀର୍ଘକାଳ ଧରି ଜାତୀୟ ସଙ୍ଗୀତ ଭାବରେ ଗାନ ହେଉଥିଲା ଏବଂ ସ୍ୱାଧୀନତା ଆନ୍ଦୋଳନର ସୈନିକ ଓ ସେନାପତିଗଣ ଅପୂର୍ବ ଉତ୍ସାହ ଓ ଉନ୍ମାଦନାରେ ଏହି ଗୀତ ଗାଇ ପ୍ରାଣବଳି ଦେବାକୁ ମଧ୍ୟ କୁଣ୍ଠିତ ହେଉ ନ ଥିଲେ । ୧୮୯୬ ଖ୍ରୀଷ୍ଟାବ୍ଦରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର କଂଗ୍ରେସ ମଣ୍ଡପରେ ଏହି ଗୀତଟି ଗାନ କରି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲେ । ଏତଦ୍‌ବ୍ୟତୀତ ସେ ଗାଇଥିଲେ ଆଉ ଦୁଇଟି ଗୀତ—"ଆମରା ମିଲେଛି ଆଜ ମାୟେର ଡାକେ" "ଅୟି ଭୁବନ ମନମୋହିନୀ" । ୧୯୦୫ ସାଲରେ ବଙ୍ଗଭଙ୍ଗ ଆନ୍ଦୋଳନ ଖାଇବର ଗିରିସଙ୍କଟଠାରୁ କାମାକ୍ଷା ପର୍ଯ୍ୟନ୍ତ, ହିମାଳୟଠାରୁ ରାମେଶ୍ୱର ପର୍ଯ୍ୟନ୍ତ ସମଗ୍ର ଦେଶରେ ଅଭୂତପୂର୍ବ ମାନସିକ ଆନ୍ଦୋଳନ ସୃଷ୍ଟି କରିଥିଲା । ସୃଷ୍ଟି ହେଲା ଜାତୀୟତାବାଦୀ ସାହିତ୍ୟ, ଜନମାନସକୁ ଉଦ୍‌ବୃଦ୍ଧ କରିବା ପାଇଁ । ମାତୃଭୂମିର ମମତାବୋଧରେ କବିମାନେ ଆକୃଷ୍ଟ ହୋଇ ଲେଖିଲେ—

"ସର୍ବେଷାଂ ନୋ ଜନନୀ ଭାରତ-
ଧରଣୀ କଲ୍ପଲତେୟଂ
ଜନନୀବତ୍ସଲ ତନୟଗଣୈସ୍ତତ୍
ସମ୍ୟକ ଶର୍ମ୍ମ ବିଧେୟଂ ।
(ରାଧାନାଥ)

କବି ରାଧାନାଥ "କେତୋଟି ଉପଦେଶ ବାକ୍ୟ" କବିତାରେ ଶୁଣାଇଗଲେ—

"ଦେଶର ଲୋଡ଼ ହେ କଲ୍ୟାଣ
ତୁଚ୍ଛ କରିବ ନିଜ ପ୍ରାଣ ।
ଆପଣା ହିତ ଦେଶହିତେ
ଲୋଡ଼ ସରବେ ଏକ ଚିତ୍ତେ ।

ଉତ୍କଳ ହିତେ ନିଜ ହିତ
ଲୋଡ଼ ହୋଇଣ ଏକ ଚିତ୍ତ ।
×          ×          ×
ସ୍ୱଦେଶଦ୍ରୋହୀ ସ୍ୱାର୍ଥପରଙ୍କ
ଉତ୍କଳ ଦେଶେ ସେ କଳଙ୍କ ।''

ନିଜର ଦେଶ, ଜାତି, ଭାଷା, ସଂସ୍କୃତିକୁ ଭଲପାଇବା ହେଲା ଜାତୀୟତାବୋଧ । ପ୍ରକୃତ ଜାତୀୟ ବୀରମାନେ ଜାତିର ସ୍ୱାର୍ଥ ପାଇଁ ଜୀବନକୁ ଉତ୍ସର୍ଗ କରିବା ଆବଶ୍ୟକ । ପରାଧୀନତାର ନାଗପାଶ ଜାତିପ୍ରାଣରୁ ଏହି ଭାବନାକୁ ବିସ୍ମୃତ କରିଦେଇଥିଲା । ବଙ୍କିମଚନ୍ଦ୍ରଙ୍କ ସହ ସ୍ୱର ମିଳାଇ ଓଡ଼ିଶାରେ ରାଧାନାଥଙ୍କ ପରି ଦେଶପ୍ରାଣ ମଧୁସୂଦନ ଦାସ ମଧ୍ୟ ସେହି ଅଗ୍ନିଗର୍ଭ ବାଣୀର ସଙ୍ଗୀତ ଶୁଣାଇଥିଲେ । ସେ ତାଙ୍କର ''ସମ୍ମିଳନୀ'' କବିତାରେ କହିଲେ ଯେ ଭାରତର ପ୍ରତ୍ୟେକ ପ୍ରାନ୍ତ ଓ ପ୍ରଦେଶ ଏକାଠି ହୋଇ ଭାରତ-ଜନନୀଙ୍କ ଶରୀରର ପ୍ରତ୍ୟେକ ଅଙ୍ଗକୁ ସୁଦୃଢ଼ କରିବା ଆବଶ୍ୟକ । ତାହାହେଲେ ଯାଇ ଜାତିର ବଳ ପ୍ରକଟିତ ହେବ ।

'ନିଜର ଜୀବନ ଜାତିକୁ ଅର୍ପଣ କଲେ ମିଳେ ଜାତିପ୍ରାଣ
ଜାତୀୟ ଜୀବନ ନ ମିଳିବ କଲେ ହାଟେ ବାଟେ ଅନ୍ୱେଷଣ ।'
(ସମ୍ମିଳନୀ)

ସ୍ୱାର୍ଥକୁ ସାରଥି କଲେ ଜାତି-ନନ୍ଦିଘୋଷ ଅଚଳ ହୋଇଯାଏ ବୋଲି 'ଉତ୍କଳ ସନ୍ତାନ' କବିତାରେ ମଧୁସୂଦନ ସ୍ମରଣ କରାଇଦେଇଛନ୍ତି । ତୋଷାମଦ କରି କେବେ ହେଲେ କେହି ଜାତିର ସମ୍ମାନ ବୃଦ୍ଧି କରିନାହିଁ । ବିଦେଶୀ ଶାସକଙ୍କ ପଦଲେହନ କରି ଯେଉଁମାନେ ସ୍ୱାର୍ଥସାଧନ କରନ୍ତି, ସେମାନଙ୍କର ''କୁକୁର ପ୍ରକୃତି ଅଇଁଠା ପତରେ ଧ୍ୟାନ'' । ଅତି ବିକଳ ଭାବରେ ମଧୁସୂଦନ ଦେଶମାତାକୁ ଝୁରି ହୋଇଛନ୍ତି, ତାହାର ଆତ୍ମାକୁ ଖୋଜି ବୁଲିଛନ୍ତି । ତାହାର ସ୍ୱାଧୀନତା ପାଇଁ ପ୍ରାଣବଳି ଦେବାକୁ ସେ ଆହ୍ୱାନ ଜଣାଇଛନ୍ତି :

''ଜାତି ପ୍ରେମ-ବହ୍ନି ପ୍ରଜ୍ୱଳିତ କର          ସ୍ୱାର୍ଥକୁ ଦିଅ ଆହୂତି
ସ୍ୱାର୍ଥମେଧ ଯଜ୍ଞ ଧୂଳିଆଡ଼େ ନାଚ          ଘୃତକୁ ମିଶାଇ ଘୃତ ।
ଭୂମିକମ୍ପ ହେବ ଧରଣୀ ଫାଟିବ          ଉଠିବେ ସହସ୍ରଭୁଜା
ସେହି ତୋର ମାତା, ସେହି ତୋର ଧାତା କର ସେହି ପାଦ ପୂଜା ।''
(ସନ୍ତାନର ଉକ୍ତି)

ଦେଶପ୍ରାଣ ମଧୁସୂଦନଙ୍କ ଉପଯୁକ୍ତ ଦାୟାଦ, ଉତ୍କଳରେ ସ୍ୱାଧୀନତା ଆନ୍ଦୋଳନର ଭଗୀରଥ ଉତ୍କଳମଣି ଗୋପବନ୍ଧୁ ମଧ୍ୟ ନାନା କବିତାରେ ଜାତୀୟତା ଭାବନାର ମନ୍ତ୍ର ପ୍ରଚାର କରିଥିଲେ । ନିଃସ୍ୱାର୍ଥ ଦେଶସେବା ତାଙ୍କ ତାଙ୍କର ଆନ୍ତରିକ ଆହ୍ୱାନ ଥିଲା । ସ୍ୱାଧୀନତା ପାଇଁ ସେ ହସି ହସି ପ୍ରାଣବଳି ଦେବାକୁ ସ୍ୱୀକାର କରିଛନ୍ତି । 'ପ୍ରାର୍ଥନା' କବିତାରେ ଗୋପବନ୍ଧୁ କାମନା କରିଛନ୍ତି ପ୍ରଭୁ ନୀଳାଦ୍ରିବିହାରୀଙ୍କ ନିକଟରେ—

"ଭାରତର ମହା ଜାତୀୟ ତରଙ୍ଗେ
ମିଶୁ ଉତ୍କଳ-ପ୍ରବାହ ଯେ ।"

ପରାଧୀନ ଜୀବନ ହେଉଛି ନିନ୍ଦିତ ଜୀବନ । ଏପରି ସମାଜରେ ବଞ୍ଚି ରହିବା କେବଳ ବିଡ଼ମ୍ବନା ବ୍ୟତୀତ ଆଉ କଣ ହୋଇପାରେ ? ସ୍ୱାଭିମାନ ଏବଂ ଇଜ୍ଜତ ରକ୍ଷା କରି ବଞ୍ଚିବା ପାଇଁ ହେଲେ ପ୍ରତ୍ୟେକ ଦେଶବାସୀଙ୍କୁ ଚରମ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ । ଗୋପବନ୍ଧୁ ଏହି କଥାଟି ସ୍ମରଣ କରାଇ ଦେଇଥିଲେ ଲୋକେ ଆତ୍ମବିସ୍ମୃତ ନ ହେବା ପାଇଁ ।

"ପୂର୍ବପୁରୁଷର ପବିତ୍ର ଶ୍ମଶାନ, ଦେଶର ଜାତିର ଗଉରବଗାନ,
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ, ଉଦ୍ଧାରିବା ପାଇଁ କଲେ ତନୁକ୍ଷୟ
ମାନବ ଜନମ ହୁଅଇ ସଫଳ, ଏ ମହାଦୀକ୍ଷା କି ଭୁଲିବ ଉତ୍କଳ ?
ଜାତୀୟ ମମତା ବିଶ୍ୱଜନପ୍ରୀତି । ଉତ୍କଳବାସୀର ହେଉ ଏହା ନୀତି ।"
( ବନ୍ଦୀର ଆତ୍ମକଥା )

ସେତେବେଳେ ଓଡ଼ିଶା ବୋଲି ପ୍ରଦେଶ ହୋଇ ନ ଥିଲା । ବଙ୍ଗପ୍ରଦେଶ ସହିତ ଓଡ଼ିଆ ଡିଭିଜନ୍ ସଂଯୁକ୍ତ ହୋଇ ଶାସିତ ହେଉଥିଲା । କଲିକତା ଥିଲା ଆମର ରାଜଧାନୀ । ତେଣୁ ବଙ୍ଗଦେଶରେ ସାହିତ୍ୟିକ ଓ ସାଂସ୍କୃତିକ ଆନ୍ଦୋଳନ ଆମ ଓଡ଼ିଶାବାସୀଙ୍କୁ ପ୍ରଭାବିତ କରିବା ସ୍ୱାଭାବିକ । ଏହି ସମୟରେ ମହାନ୍ କବି ରବୀନ୍ଦ୍ରନାଥ କହିଛନ୍ତି ଯେ ବଙ୍ଗବାସୀଗଣ ଆଉ ମଣିଷ ହୋଇ ରହିନାହାନ୍ତି । ତାହା ହୋଇଥିଲେ ସେମାନେ ଦେଶମାତାର ଅପମାନ ବରଦାସ୍ତ କରି ସ୍ୱାର୍ଥସାଧନରେ ଲିପ୍ତ ରହିଥାଆନ୍ତେ କି ? ଦେଶପାଇଁ କଷ୍ଟ ସ୍ୱୀକାର କରିବାକୁ କୁଣ୍ଠିତ ହୁଅନ୍ତେ କି ? ସେମାନେ ଆଜି ପଶୁପରି ଶାନ୍ତ ଓ ବିକଳ ଜୀବନଯାପନ କରୁଅଛନ୍ତି । ସେହି ବଙ୍ଗସନ୍ତାନ ଆଜି ଉଚ୍ଛୃଙ୍ଖଳ ହୁଅନ୍ତୁ, ବିପ୍ଳବୀ ହୁଅନ୍ତୁ ଏବଂ ମନ୍ଦ ସହିତ ସଂଗ୍ରାମ କରିବାକୁ ଶିକ୍ଷାଲାଭ କରନ୍ତୁ । ତେଣୁ ତାଙ୍କର କାମନା ହେଲା—

"ଶୀର୍ଣ୍ଣ ଶାନ୍ତ ସାଧୁ ତବ ପୁତ୍ର ଦେର୍ ଧରେ
ଦାଓ ସବେ ଗୃହଛଡ଼ା ଲକ୍ଷ୍ମୀଛଡ଼ା କରେ ।
ସାତକୋଟି ସନ୍ତାନେରେ, ହେ ମୁଗ୍‌ଧ ଜନନୀ
ରେଖେଛ ବାଙ୍ଗାଲୀ କରେ, ମାନୁଷ୍ କରନି ।"
(ବଙ୍ଗମାତା)

ଭାରତଜନନୀ ଅତ୍ୟନ୍ତ ମହାନ୍ ବିଶାଳତାର ଐତିହ୍ୟ ଓ ପରମ୍ପରା । ତାଙ୍କ କୋଳରେ ବିଭିନ୍ନ ରଙ୍ଗ, ଧର୍ମ ଓ ରୁଚିର ସନ୍ତାନଗଣ ବସବାସ କରି ଆସୁଅଛନ୍ତି । ସେମାନେ ସେହି ପବିତ୍ର ଜନନୀର ସେବାକରିବା ପାଇଁ ଆଜି ସମସ୍ତ ଭେଦଭାବ ଭୁଲି ଏକାଠି ହୋଇଯିବା ଉଚିତ । ଭାରତଜନନୀର ସେବା ଲୋକଙ୍କର ଏକମାତ୍ର ତପସ୍ୟା ହେଉ ।

"ଏସୋ ହେ ଆର୍ଯ୍ୟ, ଏସୋ ଅନାର୍ଯ୍ୟ, ହିନ୍ଦୁ ମୁସଲମାନ
ଏସୋ ଏସୋ ଆଜି ତୁମି ଇଂରାଜ ଏସୋ ଏସୋ ଖ୍ରୀଷ୍ଟାନ ।
ଏସୋ ବ୍ରାହ୍ମଣ, ଶୁଚି କରି ମନ ଧରୋ ହାତ ସବାକାର
ଏସୋ ହେ ପତିତ, କର ଅପନୀତ ସବ୍ ଅପମାନ ଭାର ।
ମା'ର ଅଭିଷେକେ ଏସୋ ଏସୋ ତ୍ୱରା, ମଙ୍ଗଳଘଟ ହୟନି ଯେ ଭରା
ସବାର-ପରଶେ-ପବିତ୍ରକରା ତୀର୍ଥନୀରେ—
ଆଜି ଭାରତେର ମହାମାନବେର ସାଗରତୀରେ ।" (ଭାରତ ତୀର୍ଥ)

ବିପ୍ଳବୀ କବି ନଜରୁଲ୍ ଆଉ ଏକ ପାଦ ଅଗ୍ରସର ହୋଇ ରକ୍ତର ହୋରିଖେଳ ପାଇଁ ଆହ୍ୱାନ ଦେଇଛନ୍ତି । ଭାରତର ଗୌରବରବି ଲୁପ୍ତ । ପରାଧୀନତାର ଅନ୍ଧକାର ସମଗ୍ର ଦେଶକୁ ବିପନ୍ନ କରିଦେଇଅଛି । ନଜରୁଲ୍ ସ୍ମରଣ କରି ଦେଇଛନ୍ତି—

"ଏଇ ଗଙ୍ଗାୟ ଡୁବିଆଛେ ହାୟ
ଭାରତେର ଦିବାକର
ଉଦିବେ ସେ ରବି ଆମାଦେର ଖୁନେ
ରଙ୍ଗାଇ ପୁନର୍ବାର ।"

ଓଡ଼ିଆ ସାହିତ୍ୟରେ କୃଷ୍ଣମୋହନ ପଟ୍ଟନାୟକ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, କୁନ୍ତଳାକୁମାରୀ ସାବତ୍, ପଦ୍ମଚରଣ ପଟ୍ଟନାୟକ, ଗୋବିନ୍ଦ ଶୂରଦେଓ, ବାଞ୍ଛାନିଧି ମହାନ୍ତି, ଲକ୍ଷ୍ମୀକାନ୍ତ ମହାପାତ୍ର, ରଘୁନାଥ ମହାନ୍ତି ପ୍ରଭୃତି ଅଳ୍ପ କେତେ ଜଣ ଜାତୀୟତାବ୍ୟଞ୍ଜକ ସଙ୍ଗୀତ ରଚନା କରିଛନ୍ତି । କାରଣ ସେକାଳର ପତ୍ରପତ୍ରିକା ପାଠ କଲେ ଜାତୀୟ ଆନ୍ଦୋଳନ ଆଧାରିତ ବିଶେଷ ଲେଖା ପଢ଼ିବାକୁ ମିଳେ ନାହିଁ । ଅଧିକାଂଶ ଲେଖକ ଏ ପ୍ରକାର ଭାବଧାରା ପ୍ରଚାରକରିବା ପାଇଁ ସାହସ କରିପାରୁ ନ ଥିଲେ ।

ଏହାପରି ଏକ ଅବକ୍ଷୟ ଏବଂ ଜାତୀୟ ସଙ୍କଟ ଯୁଗରେ କୃଷ୍ଣମୋହନ ଲେଖିଥିଲେ —

"ଗମ୍ଭୀର ଆନନ୍ଦେ ବିମୋହନ ଛନ୍ଦେ
ଗାଅ ଆଜ ବନ୍ଦେ ମାତରଂ,
ଉତ୍କଳ ଦୁଆରେ ନୀଳାଚଳାଙ୍ଗନେ
ନହବତ ଆଜ ବାଜୁଛି ସଘନେ
ଜାଗିବେ ଜନନୀ ପାହୁଛି ରଜନୀ
ବୋଲି ସର୍ବେ ବନ୍ଦେ ମାତରଂ ।"
'ଦେହ ଗଲେ ଯାଉ, ପ୍ରାଣ ଗଲେ ଯାଉ
ସବୁ ଗଲେ ଯାଉ
(କେହି) ଦେଶକୁ ନ ଭୁଲି ଥାଉ ।"

କବି ପଦ୍ମଚରଣ ପଟ୍ଟନାୟକ 'ଆହ୍ୱାନ' କବିତାରେ କହିଥିଲେ—

"ଅସ ଧନୀ ମାନୀ ଦେଶ ସୁସନ୍ତାନ
ମାତାର ବିପଦେ କାନ୍ଦୁ ତବ ପ୍ରାଣ ।"

କେହି ମାତୃଦ୍ରୋହୀ ହୁଅ ନାହିଁ ବୋଲି କବି ସତର୍କ କରି ଦେଇଛନ୍ତି । ପଣ୍ଡିତ ନୀଳକଣ୍ଠ "ଆତ୍ମବଳି" କବିତାରେ "ବୀର-ଜନନୀ ପୁଣ୍ୟ ଧରଣୀ ମା'ର କ୍ଳେଶ ଯାଉରେ" କହି "ସ୍ୱାର୍ଥ ପଦେ ଦଳି ଦିଅ ଆତ୍ମବଳି କାତରତା ଯାଉରେ" ବୋଲି ଆଶା ପ୍ରକାଶ କରିଛନ୍ତି । ଜାତୀୟ କବି ବାଞ୍ଛାନିଧି 'ସ୍ତବ' କବିତାରେ ପ୍ରାର୍ଥନା କରିଛନ୍ତି—

"ଧନ-ଜନ-ମନ--ଶକ୍ତିଦାୟିନୀ
ଭାରତ ମମ ଜନନୀ
ସୁଖଦା ଶୁଭ ଶାନ୍ତି-ଦାୟିନୀ
ଅମୃତାଂ ନମାମି ।"

କବି କୁନ୍ତଳାକୁମାରୀ ସାବତ୍ ସେହି ଆହ୍ୱାନରେ ଗାଇଛନ୍ତି—

"ଭାରତ ମୋ ମା', ଭାରତ ମୋ ମା'
ଜାଣିଛି ଏହା ମୁଁ ଅନ୍ତରେ
ଭାରତଜନନୀ ଜନ୍ମଭୂମି ମମ
ନମେ ତବ ପଦ ପ୍ରାନ୍ତରେ ।

ତୁହି ଲୋ ପବନେ, ତୋ ପବନ ରଜେ
ମୋପରିକୁ ପୁରୁଷେ ପିଣ୍ଡ ଗଢ଼ିଛୁ,
ତୁହି ଲୋ ବଚନେ, ତୋ ବଚନ ଛେନେ
ଶତ ସ୍ନେହାଦରେ ସନ୍ତାନେ ପାଳିଛୁ ।
ତୁହି ଲୋ ଭକ୍ତି ତୁହି ଲୋ ଶକ୍ତି
ତୁହିଲୋ ମୁକ୍ତି ଦ୍ୱାର
ଯାଏଁ ଯଥା ତଥା ତୋ ନାମ ସ୍ମରଣ
ପୁଣ୍ୟ ମୋ କପାଦ୍ୱାର ।” (ସ୍ତୁତିଲିଙ୍ଗ)

ମୋଟ ଉପରେ ବିଂଶ ଶତାବ୍ଦୀର ପ୍ରଥମ ଦୁଇଗୋଟି ଦଶକରେ ଜାତୀୟ ଚେତନା ସମ୍ବଳିତ କବିତା ରଚନା ପାଇଁ ଲେଖକଲେଖିକାମାନଙ୍କୁ ଅପରିସୀମ ପ୍ରେରଣା ମିଳିଥିଲା । ଓଡ଼ିଆ ସାହିତ୍ୟରେ ପ୍ରଥମ କରି ଭାରତଜନନୀ ଓ ଉତ୍କଳଜନନୀଙ୍କର ଜୟଗାନ କରାଗଲା । କବିମାନେ ଦେଶମାତୃକାର କଲ୍ୟାଣସାଧନ ପାଇଁ ସ୍ୱାର୍ଥତ୍ୟାଗ କରିବାକୁ ଆହ୍ୱାନ ଜଣାଇଲେ । ଜାତୀୟ ସ୍ୱାଭିମାନର ପ୍ରତିଷ୍ଠା ପାଇଁ ସ୍ୱାଧୀନତାର ମନ୍ତ୍ର ଘରେ ଘରେ ପ୍ରସ୍ଫୁରିତ ହେବାକୁ ଲାଗିଲା । କବିକଣ୍ଠରେ ଶୁଣାଗଲା ବୈଦେଶିକ ଶାସନ ବିରୁଦ୍ଧରେ ବିଦ୍ରୋହର ରଣଭେରୀ । ଏହି ପରିପ୍ରେକ୍ଷୀରେ ଆସିଲେ ଜାତୀୟ କବି ବୀରକିଶୋର ।

ବୀରକିଶୋର କେବଳ କବି ନ ଥିଲେ । ସେ ଥିଲେ ସ୍ୱାଧୀନତା ସଂଗ୍ରାମର ଅଗ୍ରଗାମୀ ସୈନିକ । ସ୍ୱାଧୀନତା ପାଇଁ ଯୁଦ୍ଧଯାତ୍ରା ହିଁ ତାଙ୍କ ଲେଖନୀରେ ଆଣି ଦେଇଥିଲା ଜ୍ୱାଳାମୟୀ ବାଣୀ । ସେଇ ସଙ୍ଗୀତ ଗାଇ ଗାଇ କେତେ ବାନରସେନାନୀ ହସି ହସି ଜେଲ ବରଣ କରିଥିଲେ, ଲାଠିମାଡ଼ ସହିଥିଲେ ଏବଂ ସ୍କୁଲ କଲେଜ ଓ ବ୍ୟବସାୟ ପରିତ୍ୟାଗ କରି ଅନିଶ୍ଚିତ ଭବିଷ୍ୟତର ଅନ୍ଧକାର ମଧ୍ୟକୁ ଲମ୍ଫ ପ୍ରଦାନ କରିଥିଲେ ।

କବି ବୀରକିଶୋର ଥିଲେ ସ୍ୱାଧୀନତା ଆନ୍ଦୋଳନର ପୁରୋଭାଗରେ । ସେ ଅନୁଭବ କରିଥିଲେ ଯେ ଦେଶର ବୁଦ୍ଧିଜୀବୀମାନେ ବିଦେଶୀ ଶାସକର ଅର୍ଗଳ ମଧ୍ୟରେ ବନ୍ଦୀ ପଡ଼ିଯାଇଛନ୍ତି । ସାମ୍ରାଜ୍ୟବାଦୀ ଶକ୍ତିର ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ ସେମାନେ ସାହସ କଲେ ନାହିଁ । ସେତେବେଳେ ଜାତି ଓ ସମାଜ ହୋଇଛି ପ୍ରାଣହୀନ ଓ ଭୟଙ୍କର ଭାବରେ ପରନିର୍ଭରଶୀଳ । ସେ ଆତ୍ମସମୀକ୍ଷା କରିବାର ପ୍ରେରଣା ହରାଇ ବସିଛି । ନିଜକୁ ଚିହ୍ନିବା ପାଇଁ ଆଦୌ ସଚେତନ ହୋଇନାହିଁ । ସୁପ୍ତ ସିଂହର ଗୁମ୍ଫାରେ ବିଦେଶୀ ଶୃଗାଳ ଯେ ନିର୍ଭୟରେ ନୃତ୍ୟ କରି ବୁଲୁଛି, ଏ କଥା କହିବ କିଏ ? କିଏ ଏହି ଜାତିକୁ ଉଠାଇବ, ତାହାକୁ ଉନ୍ମାଦିତ ଏବଂ ଉତ୍ତେଜିତ କରି ? କିପରି ଏ ଜାତି ଦୀକ୍ଷିତ ହେବ ଦେଶକଲ୍ୟାଣ ବ୍ରତରେ ଏବଂ ତାର କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେବ 'ମରଣ ବିଜୟୀ ବଂଶୀ'ର ସ୍ୱନ ।

ବୀରକିଶୋର ଜାଣିଥିଲେ ଯେ ତାଙ୍କର ପୂର୍ବପୁରୁଷମାନେ ଦେଶମାତାର ଗୌରବ ଗାନ କରି ନମସ୍ୟ ହୋଇଛନ୍ତି । ଏ ଦେଶର ବୀର ସନ୍ତାନଗଣ ପରାଧୀନତାର ଗ୍ଲାନି ଯୋଗୁଁ ଏକପ୍ରକାର ଅଚେତନ । ମାତ୍ର ସେମାନେ ବାରୁଦର ପାହାଡ଼ । ଏହି ପାହାଡ଼ରେ ଅଗ୍ନି ସଂଯୋଗ କଲେହିଁ ତାହା ଅଗ୍ନିଉତ୍ପାତ ସୃଷ୍ଟି କରି ବିଦେଶୀ ଶକ୍ତିକୁ ଜାଳି ପୋଡ଼ି ଧ୍ୱଂସକରିଦେବ । ମାତ୍ର ସେଥିରେ ଅଗ୍ନିସଂଯୋଗ କରି ସତ୍ୟାଗ୍ରହୀମାନଙ୍କୁ ରକ୍ତମୁଖା କରିବ କିଏ ? ଏହାର ପରିଣତି ଭୟଙ୍କର ଏବଂ ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତି ତାହା ଆଦୌ ବରଦାସ୍ତ କରିବ ନାହିଁ ଜାଣି ମଧ୍ୟ କବି ବୀରକିଶୋର ବାନରସେନାମାନଙ୍କୁ ଏହି ମନ୍ତ୍ର ଶୁଣାଇଥିଲେ—

"ଭାଇ ହେ,
ରଣ ସମୟରେ ବନ୍ଧୁ ଧରିବାକୁ
ମୋତେ ଆଜି ତୁମେ ଆଜି କହନା,
ହୃଦର ରଜତ ତାର ଉଠେ ମୋର
ବାଜିଉଠେ ଯୁଦ୍ଧ ବାଜଣା, ଭାଇ ହେ…
ଘନ ଘନ ବାଜି ଉଠେ ରଣଭେରୀ
ମଦମତ୍ତ ଆଜି ଆମର ବଳିଷ୍ଠ
ମୋ ଦେଶ ଦେବତା ହୃଦ ରକ୍ତ ଲାଗି
ଲହ ଲହ ତାର ରସନା ।" (ରଣଦୁନ୍ଦୁଭି)

ଅର୍ଥବଳରେ ମୋହଗ୍ରସ୍ତ କରି ବିଦେଶୀ ସରକାର ଆମକୁ ଆଉ କିଣିପାରିବ ନାହିଁ । ଗାନ୍ଧୀ ଓ ଗୋପବନ୍ଧୁଙ୍କର ଆଦର୍ଶରେ ସତ୍ୟାଗ୍ରହୀ ସାଜି ସତ୍ୟର ସାଧନା କରିବାକୁ ହେବ । ଇଂରେଜ ସରକାର ହୃଦୟଙ୍ଗମ କରିବା ଉଚିତ ଯେ ଆଉ ଆସୁରି ବଳ ପ୍ରୟୋଗ କରି ସେମାନେ ଏ ଦେଶରେ ସଫଳ ହେବେ ନାହିଁ । "ତୋପ ବଳଠାରୁ ତପ ବଳ ବଡ଼" । ଏ ଦେଶରେ "ମାନବ ନୋହିବେ ମାନବର ଦାସ" । ବିଦେଶୀଙ୍କ ଚକ୍ରାନ୍ତରେ ଆଉ "ଭାଇ ଦେଲେ ଭାଇ ଛୁଆ ନ ମାରିବେ" । ଏ ସରକାରର ସ୍ୱରୂପ ଲୋକେ ଚିହ୍ନି ରଖନ୍ତୁ ।

"ଏ ଯେ ଗୁଣ୍ଡା ସରକାର
ଏ ଯେ ହୁଣ୍ଡା ସରକାର
ଗୁଣ୍ଡାମି ସଙ୍ଗେ ହୁଣ୍ଡାମି ତାର ନିତ୍ୟ କାରବାର ।
ଆଇନ୍ କାନୁନ୍ ନାହିଁ ତାର କିଛୁ
ମନ ଖୋଜି ତାର ଗତି
ବୁଦ୍ଧି ବଳ ସବୁ ଚୁଲିକୁ ଗଲାଣି
ଚରଣଚଟିଆ ନୀତି । ୧ ।

× × ×

ବିଳାତ ବାଳିଏ ମହଜ କରନ୍ତି
ଆମେ ଗଣି ମରୁ କର
ଗଉଡ଼ ପୁଅର ଗୁହାଳ ଧୋଇକି
ମୋଟ ପୁଅ ବାହାଘର । ୮ । (ଗୁଣ୍ଡା ସରକାର)

ତେଣୁ ଏ ସରକାରକୁ ହଟାଇବାକୁ ହେବ । ଏଥିପାଇଁ ଯେତେ ବଡ଼ ତ୍ୟାଗ ସ୍ୱୀକାର କରିବା ଆବଶ୍ୟକ, ସେଥିପାଇଁ ଦେଶବାସୀ ପ୍ରସ୍ତୁତ ହେବେ ବୋଲି ଆଶା କରାଯାଏ । ବୀରକିଶୋର ଲେଖିଛନ୍ତି—

"ସତ୍ୟାଗ୍ରହର ଖଡ୍‌ଗ ଧାରରେ
ସ୍ୱାଧୀନ ବିଜୟ ଯାତ୍ରୀ
ରକ୍ତ ଜବାର ଅଞ୍ଜଳି ଦେବା
ପୂଜିବା ଜନମଦାତ୍ରୀ ।
ବ୍ରିଟିଶ କେଶରୀ କେଶର ଦଳିବା
ମୃତ୍ୟୁ ସାଥିରେ ଲୁଚି
ଆଇନ୍ କାନୁନ୍ ଭାଙ୍ଗିବା ତାହାର
ଆସରେ ଜବରଦସ୍ତି ।" (ସ୍ୱାଧୀନ ସୈନ୍ୟ)

'ସରକାରି ଶବ ଦାହ ହେବ କେବେ'' କବିତାରେ କବି ସତର୍କ କରି ଦେଇଛନ୍ତି ଯେ ବିଦେଶୀ ସରକାରକୁ ଲୋପକରିଦେବା ପାଇଁ ଆଜି ଲକ୍ଷ ଲକ୍ଷ ଯୁବକ ଗୁଳିମୁହଁରେ ଛାତି ପତାଇ ଦେବାକୁ ମଧ୍ୟ ପ୍ରସ୍ତୁତ । ଏ ସରକାରର ଶବ କେବେ ଦାହ କରାଯିବ, ସେଥିପାଇଁ ବୀର ସତ୍ୟାଗ୍ରହୀମାନେ ଅପେକ୍ଷା କରି ବସିଛନ୍ତି । ସେମାନେ ଆଦୌ ଦବିଯିବେ ନାହିଁ ସରକାରୀ ଦମନଲୀଳାର ନିର୍ମମ ଆଘାତରେ । ସେମାନେ ଆଜି ମାଆ ପାଇଁ ହସି ହସି ଦୁଃଖ ବରଣ କରିବେ, ଜେଲ ଘର ପୂରଣ କରିବେ, କିନ୍ତୁ କେବେହେଲେ ପରାଧୀନ ସରକାରର ହାତବାରିସି ହୋଇପାରିବେ ନାହିଁ । ଅହିଂସା ସେମାନଙ୍କର ପରମ ଧର୍ମ । ବିଳାତି ଦ୍ରବ୍ୟ ବର୍ଜନକରିବା ପାଇଁ ସେମାନେ ପଣ କରିଛନ୍ତି । କବି ଇଂରେଜ ସରକାରକୁ ନିର୍ଭୀକ କଣ୍ଠସ୍ୱରରେ ଶୁଣାଇ ଦେଇଛନ୍ତି ଆପେ ଆପେ ବିଦା ହୋଇଯିବା ପାଇଁ । ବନ୍ଦୀ କରି, ଅତ୍ୟାଚାର କରି ବିଦେଶୀ ସରକାର ସ୍ୱାଧୀନତା ଆନ୍ଦୋଳନକୁ ଦବାଇ ପାରିବେ ନାହିଁ ।

"କେତେ ଠେଙ୍ଗା ଅଛୁ, କେତେ ବାଡ଼ି ଅଛୁ
ଫଟାଇବ ତାକୁ ଫଟାଅ,
କେତେ ଗୁଳି ଅଛୁ କେତେ ତାଲି ଅଛୁ
ପକାଇବ ତମେ ପକାଅ ।"
(ମାନେ ମାନେ ଯାଅ ବିଦା ହେବା କଥା)

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଦେଶବ୍ୟାପୀ ଏ ଆନ୍ଦୋଳନ ଚାଲିଛି । ସେହି ବୀର ସେନାପତି ଗାନ୍ଧୀଙ୍କୁ ମଧ୍ୟ ବିଦେଶୀ ସରକାର କମ୍ କଲବଲ କରିନାହିଁ । ତାଙ୍କରି ପ୍ରେରଣାରେ କବି ଧରିଥିଲେ ଲେଖନୀ ଅଗ୍ନିଗର୍ଭ ବାଣୀ ଶୁଣାଇବା ପାଇଁ ଏବଂ ହସି ହସି ଜେଲ୍ ବରଣ କରିବା ପାଇଁ । ବୀରକିଶୋର ଲେଖିଲେ ୧୯୨୨ ସାଲରେ 'ମୋହନବଂଶୀ'ରେ, ଯାହା ଇଂରେଜ ସରକାରଙ୍କୁ ବିଚଳିତ କରିଦେଇଥିଲା ।

ପରାଧୀନତାଯୋଗୁ ସୁନାର ଭାରତ ଚୂନା ହୋଇଗଲା । ବିଦେଶୀ ଦ୍ରବ୍ୟରେ ଦେଶର ବଜାର ଭରପୂର ହୋଇଗଲା । ଏହି ବିଦେଶୀ ସରକାର ଆମକୁ ଶୋଷଣ କରିବାରେ ଲାଗିଛନ୍ତି । ଏହି ପାପୀ ସରକାରକୁ ଆଉ ବରଦାସ୍ତ କରିବା କି ? କବିଙ୍କର ଆହ୍ୱାନ ହେଲା—

"କର୍ମବୀର ହୋଇ ଏବେ କର୍ମ କର ଭାଇ
ଧର୍ମ ଯୋଗୁ ଦିଅ ଆଜି ଶରୀର ପତାଇ ।
ଧର୍ମ ଯୋଗୁ ପାଳ ଆଜି ସ୍ୱଦେଶର ବ୍ରତ
କର୍ମ ଯୁଗେ ଦେଶହିତେ ହୁଅ ଭାଇ ରତ ।
× × ×
ହୋମାନଳ ପରି ମୋର ଜୀବ ଲିଭିଯାଉ
ହିମାଳୟ ଗିରି ମୋର ସ୍ୱାଧୀନତା ପାଉ ।
× × ×
ଏ ଜୀବନଦାନ କଲି ଦେଶ ଲାଗି ଭାଇ
ଆଗ ପଛ କଥା କିଛି ବାରେ ଚିନ୍ତା ନାହିଁ' ।
(ଧର୍ମବାଣୀ)

ଦେଶର ବିକଳ ପରିସ୍ଥିତି ପର୍ଯ୍ୟାଲୋଚନା କରି ବୀରକିଶୋର ଲେଖିଥିଲେ—

"ସୁନାର ଭାରତ ଆମ ହେଲା ଛାରଖାର
ଖାଇବାକୁ ନ ପାଇଲୁ ଓଳିଏ ଆହାର ।
ବିଦେଶୀ ଦରବେ ଆମ ଦେଶ ଗଲା ଭରି
ସତ କହିବାକୁ ଲୋକେ ମରୁଛନ୍ତି ଡରି ।" (ଧର୍ମବାଣୀ)

ବୀରକିଶୋରଙ୍କ ସହିତ ସ୍ୱର ମିଳାଇ ଜାତୀୟ କବି ବାଞ୍ଛାନିଧି ମହାନ୍ତି ସେ କାଳରେ ଏଇ ଗୀତଟି ରଚନା କରିଥିଲେ—

'କାହିଁ ଅଇଲେ ବିଦେଶରୁ ବେପାରୀ
ସବୁ ଯାଇଲେ ହେଲୁ ଆମେ ଭିକାରୀ ।
ଇଂରାଜୀ-ଇରାନୀ-ଜର୍ମାନୀ-ଜାପାନୀ
ଚୀନା କାବୁଲି ଏ ଦେଶ ଯେପାର ।
ଚକ୍ ଚକ୍ ଗୁଇନା ମାଟିର ବାସନ
ଯାଉଦେଲା ବୁଡ଼ି ଦେଶ କଂସାର ।'

(ବାଞ୍ଛାନିଧି ପଦ୍ୟାବଳୀ)

ଜାତୀୟ ସଂଗ୍ରାମର ପ୍ରଧାନ ମନ୍ତ୍ରଦାତା ଥିଲେ ଜାତିର ପିତା ମହାତ୍ମା ଗାନ୍ଧୀ । ସମଗ୍ର ଭାରତର ଲୋକେ ତାଙ୍କ ନିର୍ଦ୍ଦେଶକୁ ନିର୍ବିକାର ଚିତ୍ତରେ ପାଳନ କରିବାପାଇଁ ଧାଇଁ ଆସନ୍ତି । ଏହାହିଁ ଥିଲା ଜାତୀୟ କଂଗ୍ରେସର ଆହ୍ୱାନ । ଗାନ୍ଧୀ ଥିଲେ ଏ ଦେଶର ମୁକୁଟ-ବିହୀନ ସର୍ବମାନ୍ୟ ଜନନେତା । ତାଙ୍କରି ନେତୃତ୍ୱ ଉପରେ ଦେଶବାସୀଙ୍କର ଗଭୀର ଆସ୍ଥା ଓ ବିଶ୍ୱାସ ଥିଲା । ତିରଙ୍ଗା ପତାକା ତଳେ ଗାନ୍ଧୀଙ୍କ ନେତୃତ୍ୱକୁ ସ୍ୱୀକାର କରି ଦେଶବାସୀ ଏକାଠି ହୁଅନ୍ତୁ ବୋଲି ବୀରକିଶୋର ଆହ୍ୱାନ ଜଣାଇ ଲେଖିଥିଲେ—

"ଗାନ୍ଧୀ ନାମେ ଯେବେ ବିଶ୍ୱାସ ଅଛି ପତାକା ତଳକୁ ଆସରେ
ମୁକତି ଗଙ୍ଗାର ଢେଉ ଛୁଟି ଅସେ ବେଗାବେଗି ଦିଅ ଝାସରେ ।
ଜଳିଲାଣି ଅରି ପ୍ରଳୟ ଅନଳ
ଥରି ଉଠେ ଆଜ ଅଷ୍ଟ କୁଳାଚଳ
ଦେବତା ଦେଶରେ ଦାନବ ରାଜତ୍ୱ ବୋଲି ଅଛୁ ନାଗଫାଶରେ ।"

(ପତାକା ତଳକୁ ଆସ)

ଜାତୀୟ କବି ବାଞ୍ଛାନିଧି ମହାନ୍ତି ମଧ୍ୟ ସେହି ମହାତ୍ମା ଗାନ୍ଧୀଙ୍କ ପ୍ରେରଣା ଲାଭ କରି ଅଗ୍ରସରହେବା ପାଇଁ ଆହ୍ୱାନ ଜଣାଇ ଲେଖିଥିଲେ—

"ମାନବତା ପ୍ରୀତି ଯା'ର ମୂଳମନ୍ତ୍ର
ଜାତୀୟ ଗୌରବ ଯା'ର ଏକ ତନ୍ତ୍ର
ଧରି ସେ ଆଗ୍ରହେ ମୋର ବୀଣା ଯନ୍ତ୍ର
ସ୍ୱାଧୀନତା-ସ୍ୱରେ ଗାଉଛି ରେ ।"

(ବାଞ୍ଛାନିଧି ପଦ୍ୟାବଳୀ)

ଲେଖକ ବୀରକିଶୋର ଗାନ୍ଧୀ ଯୁଗରେ ଜନ୍ମଗ୍ରହଣ କରି ନିଜକୁ ଧନ୍ୟ ମନେ କରିଛନ୍ତି । ଗାନ୍ଧିଜୀ ଭାରତବାସୀଙ୍କର ଆଖି ଖୋଲି ଦେଲେ, ଏ ଦେଶରେ ଗୋରା ଶାସନ

ଅଧିକ କାଳ ଅବ୍ୟାହତ ରହିଲେ ଦେଶର ଭବିଷ୍ୟତ ଅନ୍ଧକାରମୟ ହୋଇଯିବ ବୋଲି ବୁଝାଇଦେଲେ । ଏଠାରେ ଧର୍ମଗତ, ଗୋଷ୍ଠୀଗତ, ଜାତିଗତ, ଭାଷାଗତ ଭେଦଭାବ ଭୁଲିଯାଇ ଦେଶଜନନୀର କଲ୍ୟାଣ ପାଇଁ ସାଧନା କରିବାକୁ ହେବ । ବିଦେଶୀ ଶାସକଗଣ ଆମକୁ ଚିରକାଳ ଆମର ମାଟି ଉପରେ ଛେଳି ମେଣ୍ଢା ପରି ଆଉ ବ୍ୟବହାର କରିପାରିବେ ନାହିଁ । ଏ ପାପୀ ଶାସନ ହଟାଇବାକୁ ହେଲେ ଆମେ ଆଇନ ଅମାନ୍ୟ ଆନ୍ଦୋଳନରେ ହସି ହସି ଝାସ ନ ଦେଲେ ଚଳିବ ନାହିଁ । ଏହି ଅହିଂସା ସଂଗ୍ରାମ ଜରିଆରେ ଯେପରି ଏ ଦେଶର ଦ୍ୱୀପୀମୁହଁଆର ହାତକୁ ସ୍ୱାଧୀନତା ଆସିବ, ତାହାହିଁ ଆମର ଧ୍ୟେୟ ହେବା ଉଚିତ ।

"ଉନ୍ନତ ହୁଅ ଜାଗ୍ରତ ହୁଅ ଭାରତ ଶୂରସନ୍ତାନ
ବିଦ୍ରୋହୀ ହୁଅ, ବିଦ୍ରୋହୀ ଭାର ଭଙ୍ଗ ପିଶାଚ ଶାସନ
(ଭଙ୍ଗ ଆଇନ କାନୁନ)

"ସାରା ବିଶ୍ୱରେ ହାହାକାର ଆମେ
ପକାଇ ଦେବୁ, ପକାଇ ଦେବୁ
ଗୋରା ଶାସନକୁ ଏପାରି ସେପାରି
ନଚାଇ ଦେବୁ, ନଚାଇ ଦେବୁ ।
ଆମେ ନ କିଣିବୁ ବିଦେଶୀ ଚିଜ
ଆଉ ନ ଆସିବ ତାଙ୍କ ଜାହାଜ
ତାଙ୍କ ଠକପଣ ଛଡ଼ାଇଦେବୁ, ଛଡ଼ାଇଦେବୁ ।
× × ×
ଆମେ ଦରିଆରୁ ମାରିବୁ ଲୁଣ
ଗୋରା ବେପାରୀଙ୍କ ଭାଙ୍ଗିବୁ ଟାଣ
ତାଙ୍କ ବୁଦ୍ଧି ବଳ ହଜାଇଦେବୁହଜାଇଦେବୁ ।"
(ରଣଭେରୀ)

ଦେଶ ପାଇଁ ଜୀବନ ଦେବାଲାଗି ଶପଥନେବା ନିମନ୍ତେ କବି ବୀରକିଶୋର ଏହି କବିତାରେ ବ୍ୟାକୁଳ ଭାବରେ ନିବେଦନ କରିଛନ୍ତି । ବିଶାଳ ଭାରତବର୍ଷରେ ଜାତୀୟ-ସଂହତିର ଅଭାବ ଯୋଗୁ ଏହି ମହାନ୍ ଦେଶ ଯୁଗେ ଯୁଗେ ପରାଧୀନତା ବରଣ କରି ଆସିଛି । ସେଥିପାଇଁ ଏହି ଦେଶର ପବିତ୍ର ମାଟି ଉପରେ ବିଦେଶୀ ଶତ୍ରୁ ଶହ ଶହ ବର୍ଷ ଧରି ଲୀଳାଖେଳା କରି ଆସିଛନ୍ତି । ଭାରତରେ କେବେହେଲେ ଶକ୍ତିର ଅଭାବ ନ ଥିଲା । ଅଭାବ ଥିଲା କେବଳ ସାମାଜିକ ବୁଝାମଣା, ଦେଶପ୍ରୀତି ଏବଂ ପ୍ରଚଣ୍ଡ ସ୍ୱାଭିମାନ । ତେଣୁ ବହୁ ପ୍ରକାର ଧର୍ମମତ ଏବଂ ସଂସ୍କୃତିସମ୍ବଳିତ ଏହି ବିଶାଳ ଦେଶର ଅଧିବାସୀଙ୍କୁ ଗୋଟିଏ ମାତାର ସନ୍ତାନ ବୋଲି ଜଣାଇଦେବା ପାଇଁ ସେ ଲେଖିଥିଲେ—

"ଆମେ କୋଟି କୋଟି ଭାରତବାସୀ
ଗୃହ କାରିଗର ମୂଲିଆ କୃଷୀ
ଆମେ ଅଛୁ ଶିଖ୍ ବୌଦ୍ଧ ପାର୍ଶୀ
ଆମେ ରେ ଜଇନ, ଖିରସ୍ତାନ
ଆମେ ହିନ୍ଦୁ ଆମେ ମୁସଲମାନ
ମସଜିଦ ଯେଉଁ ମାଟିରେ ଗଢ଼ା
ଗିରିଜା ମନ୍ଦିର ତହିଁରେ ଛିଡ଼ା
ଏକା ପାଣି ଏକା ପବନେ ବଞ୍ଚୁ
ଏକା ରକ୍ତରେ ଗଢ଼ା ଆମର ଜାନ୍
ଆମେ ହିନ୍ଦୁ ଆମେ ମୁସଲମାନ ।"

(ଆମେ ହିନ୍ଦୁ, ଆମେ ମୁସଲମାନ)

ଜାତିଗତ ଭେଦାଭେଦ ଭୁଲି ସଂହତି, ସମନ୍ୱୟ ଏବଂ ବୃନ୍ଦାମଣା ପ୍ରତିଷ୍ଠା କରିବା ଥିଲା ଜାତୀୟ ଆନ୍ଦୋଳନର ମୁଖ୍ୟ ପ୍ରେରଣା । ଅସହଯୋଗ ଆନ୍ଦୋଳନ ବହୁକାଳ ପରେ ଭାରତଭୂମିରେ ଏକତାର ମନ୍ତ୍ର ପ୍ରଚାର କରିଥିଲା । ଭାରତର ଗଗନ ପବନରେ ପ୍ରତିଧ୍ୱନିତ ହୋଇଥିଲା 'ଜୟ ଭାରତମାତାର ଜୟ' । କବି ବାଞ୍ଛାନିଧି ମହାନ୍ତି ସେହି ଭାବନାର ଜୟଜୟକାର ଶୁଣାଇଥିଲେ ତାଙ୍କର ବୈପ୍ଳବିକ କବିତା ମାଧ୍ୟମରେ—

"ଜୟ ଜୟ ହିନ୍ଦୁ ମୁସଲମାନ
ଶିଖ ପାର୍ସି ଜୈନ ବୌଦ୍ଧ ଇହୁଦି ଖ୍ରୀଷ୍ଟିଆନ
ନ କରି କାହାରି ଭୟ ଗାଅ ଜନ୍ମଭୂମିର ଜୟ
ସ୍ୱାଧୀନତା ବୈଜୟନ୍ତୀ ଉଡ଼ାଅ ଅବନୀମୟ
ଗର୍ଜିଉଠୁ ସିଂହନାଦେ ସୁପ୍ତ ହିନ୍ଦୁସ୍ଥାନ ।

(ବାଞ୍ଛାନିଧି ପଦ୍ୟାବଳୀ)

କବି ବିଦ୍ରୋହୀ, କବି ହେଉଛି ସମାଜର ଆଲୋକବର୍ତ୍ତିକା । ଯେଉଁ କବି ସ୍ୱପ୍ନଲୋକରେ ବିଚରଣ କରି ପକ୍ଷୀ ରାଇଜର କଳ୍ପନାରେ ମସଗୁଲ ହୋଇ ଲେଖନୀ ଚାଳନା କରେ, ସେ କେବଳ ପ୍ରତିକ୍ରିୟାଶୀଳ ସମାଜକୁ ଉତ୍ସାହିତ କରିଥାଏ ସିନା । ସମାଜ ଜୀବନକୁ ସଚେତନଶୀଳ ହେବା ପାଇଁ ଉପାଦାନ ଯୋଗାଇଦେବା, ଅନ୍ଧକାରକୁ ଭେଦିବା ପାଇଁ ହିମ୍ମତ୍ ସଞ୍ଚାରିତ କରିବା ହେଲା କବିର ଏକାନ୍ତ କର୍ତ୍ତବ୍ୟ । ଯୁଗେ ଯୁଗେ ସବୁ ଦେଶରେ କବିମାନେହିଁ ବିପ୍ଳବର ନିୟାମକ ହୋଇଆସନ୍ତି । ଏହି ପରାଧୀନ ଜାତିକୁ ଜାତୀୟତା ଆନ୍ଦୋଳନରେ ଝାସଦେବା ପାଇଁ ସାହିତ୍ୟହିଁ କେବଳ ଉଦ୍‌ବେଳିତ କରି-

ପାରିବ । ତେଣୁ 'ବିଦ୍ରୋହୀ ବୀଣା'ରେ କବି ବୀରକିଶୋରଙ୍କର ଅହ୍ୱାନ ଜ୍ୱାଳାମୟୀ ଭାଷାରେ ତାଙ୍କର ପ୍ରିୟ ଦେଶବାସୀଙ୍କ ପାଇଁ —

"ମୁଁ ଯେ ବିଦ୍ରୋହୀ, ଚିର ବିଦ୍ରୋହୀ
ଚିର ରଣଜୟୀ ରଣବିଦ୍ରୋହୀ
ରଣମାନବ ରଣଦାନବ ରଣରକ୍ତମୁଖରୁ
ମୁକ୍ତ କରିବି ମୋର ମହୀ ।" (ବିଦ୍ରୋହୀ ବୀଣା)

"ଏ ଶାସନ ଆଜ କରି ଖଣ୍ଡ ଖଣ୍ଡ
ପ୍ରଜାହାତେ ଦେଇଯିବା ରାଜଦଣ୍ଡ
ତଳେ ବସୁମାତା ଉପରେ ଦେବତା
ସଦା ଗାଇଲେ ଆମରି ଯଶ
ଦରିଆ ଦଖଲ କରିଯିବ କିଏ ଆସ ।"
(ଦରିଆ ଦଖଲ କରିଯିବ କିଏ ଆସ)

## ବୀରକିଶୋରଙ୍କ କାବ୍ୟ-ସାଧନାର ଆଭିମୁଖ୍ୟ

ସବୁକାଳେ କୁହାଯାଇଛି, ସାହିତ୍ୟର ଉଦ୍ଦେଶ୍ୟ ଆନନ୍ଦ ପ୍ରଦାନକରିବା । ରସିକ ପାଠକ ସଂସାରରେ କବିର ଲେଖା କିପରି ପ୍ରଶଂସିତ ହେବ, ଏହି ଭାବନା ରଖି ବିଭିନ୍ନ ପଦରେ ପ୍ରତିପାଦିତ କରିଥାଏ । ପାଠକର ମନ ଯୋଗିବା ପାଇଁ କବି ତାର କାବ୍ୟସୁନ୍ଦରୀଙ୍କୁ ସଜାଇ ଦିଏ । କେତେ ଅଳଙ୍କାରରେ ମଣ୍ଡିତ କରିଦିଏ ପାଠକର ମନଲୋଭି ହେବାପାଇଁ ।

କାବ୍ୟ ସାଧନା କବି ପାଇଁ ଯଶ ଓ କୀର୍ତ୍ତି ରଖିଯାଏ । ସେ ସମାଜ ଓ ରାଷ୍ଟ୍ରଦ୍ୱାରା ପୁରସ୍କୃତ ହୁଏ । ପଦପଦବୀର ମୋହ ମଧ୍ୟ ତାର ଥାଇପାରେ । ରାଜକବି, ରାଷ୍ଟ୍ରକବି ହେବାପାଇଁ କାହାର ଅବା ଅଭିଳାଷ ନ ରହିବ !

କିନ୍ତୁ ବୀରକିଶୋର ଏହାର ଥିଲେ ବ୍ୟତିକ୍ରମ । ସେ ଯେଉଁ ଭାଷାରେ ଯେଉଁ ବିଷୟରେ କବିତା ଲେଖିବା ପାଇଁ ଧ୍ୟାନ ଦେଉଥିଲେ, ତାହା ପୁରସ୍କାର ପରିବର୍ତ୍ତେ ଆଣି ଦେଉଥିଲା ତାଙ୍କ ପାଇଁ ଅଜସ୍ର ନିର୍ଯାତନା ଓ ହାତକଡ଼ି । ସେ କବିତା ପାଠ କରି ପାଠକ ଅତଳ ସ୍ୱପ୍ନର କୁଆରରେ ଉବେଇ ଟୁବେଇ ହେଉ ନ ଥିଲା । ସେ ହସି ହସି ଡେଇଁ ପଡ଼ୁଥିଲା ସତ୍ୟାଗ୍ରହର ନିଆଁ ଭିତରକୁ, ଦେଶମାତାର ପରାଧୀନତାର ବନ୍ଧନ ଖୋଲି-ଦେବା ପାଇଁ । ସେ ହସି ହସି ସ୍ୱାଧୀନତାର ସଂଗ୍ରାମ ମଧ୍ୟରେ ହଜିଯାଉଥିଲା । ୧୯୩୧ ମସିହାରେ ମହାତ୍ମା ଗାନ୍ଧୀ ଗୋଲଟେବୁଲ ବୈଠକରେ ଯୋଗଦେବା ପାଇଁ ଗଲାବେଳେ

କବି ଲେଖିଥିଲେ "ରଣଭେରୀ" ପୁସ୍ତକଟି । ତାଙ୍କର ଭାଷାରେ 'ରଣଭେରୀ' ଓ ରଣଦୁନ୍ଦୁଭି' ଲାଗି ମୋ ନାମରେ ମକଦ୍ଦମା ହେଲା ଏବଂ ମୋତେ ଦୁଇବର୍ଷ ଜେଲ ଭୋଗିବାକୁ ପଡ଼ିଲା । ସ୍ୱାଧୀନତା ପରେ କବି ବୀରକିଶୋର ଲେଖିଲେ 'ସମର ଯୁଗର ଅମର ସଙ୍ଗୀତ' (୧୯୭୨) ସମଗ୍ର ସ୍ୱାଧୀନତା ସଂଗ୍ରାମର ଇତିବୃତ୍ତ ଏଥିରେ କବିତା ଆକାରରେ ଲେଖାଯାଇଛି । ଏହି ପୁସ୍ତକର ମୁଖବନ୍ଧରେ କବି ଲେଖିଥିଲେ ମନର କଥା—

'ମୁଁ କବିତାକୁ ଭଲପାଏ, କବିତା ମୋତେ ଭଲପାଏ । ଋଷ୍ୟଶୃଙ୍ଗ ମୁନିଙ୍କୁ ଜରତା ଛଡ଼ାଇ ଆଣିଲା ପରି ସ୍ୱାଧୀନତା ମୋତେ ଭୁଲାଇ ଆଣିଥିଲା । ମୁଁ ସ୍ୱାଧୀନତାକୁ ମର୍ମେ ମର୍ମେ ଅନୁଭବ କରିଥିଲି ଏବଂ ସ୍ୱାଧୀନତା ସଂଗ୍ରାମର ପବିତ୍ର ବହ୍ନିରେ ଝାସ ଦେଇଥିଲି । ଏଇ କବିତା ଲାଗି ଥରକୁ ଥର ଜେଲ ଗଲି, ତଥାପି କବିତା ଆଉ ମୋ ଭିତରେ ଯେଉଁ ନିବିଡ଼ ସମ୍ପର୍କ, ସେ ତୁଟିଲା ନାହିଁ, ବରଂ ଅଧିକ ଶକ୍ତ ହୋଇଛି ।'

ଏ ଦେଶର ସତ୍ୟାଗ୍ରହୀ ସୈନିକମାନେ ଥିଲେ ସତ୍ୟର ସାଧକ । ଅହିଂସା ଥିଲା ସେମାନଙ୍କର ବ୍ରତ, ଦେଶର ମୁକ୍ତି କାମନା ଥିଲା ଜୀବନର ଅଭିପ୍ରେତ ତପସ୍ୟା । ସେଠାରେ ଆଉ କୌଣସି ସ୍ୱାର୍ଥ ଆସ୍ଥାନ ମାଡ଼ି ବସି ପାରି ନ ଥିଲା । ପୁରାଣ ଯୁଗର ପୁଣ୍ୟବାନ ମହାରାଜା ଶିବି ନରକ ଦର୍ଶନ କାଳରେ ସ୍ୱର୍ଗକୁ ଯିବା ପାଇଁ ନିମନ୍ତ୍ରଣ ପାଇବାରୁ ଆବେଗ କଣ୍ଠରେ ପ୍ରତ୍ୟାଖ୍ୟାନ କରି କହିଥିଲେ —

"ନ ତ୍ୱହଂ କାମୟେ ରାଜ୍ୟଂ ନ ସ୍ୱର୍ଗଂ ନ ପୁନର୍ଜନ୍ମ
କାମୟେ ଦୁଃଖତପ୍ତାନାଂ ପ୍ରାଣିନା ଅର୍ତ୍ତିନାଶନମ୍ ।"

—ମୋର ରାଜ୍ୟ ସୁଖ ଲୋଡ଼ା ନାହିଁ । ସ୍ୱର୍ଗ ମୁଁ କାମନା କରୁନାହିଁ । ନରୁବା ଆଉଥରେ ଜନ୍ମ ହେବାପାଇଁ ମୋର ଆଦୌ ଅଭିଳାଷ ନାହିଁ । ମୋର ଏତିକି ମାଗୁଣି ଯେଉଁଠାରେ ଦୁଃଖୀ ଏବଂ ଅତ୍ୟାଚାରିତ ଅଛନ୍ତି, ସେମାନଙ୍କର ସେବା କରିବାର ସୁଯୋଗ ମୋତେ ମିଳୁଥାଉ ।

ସେହିପରି କବି ବୀରକିଶୋର ଜୀବନରେ ମୁକ୍ତିକାମନା କରିନାହାନ୍ତି । ଦେଶସେବା ବିନିମୟରେ କିଛି କ୍ଷମତା ଓ ଧନ ଅର୍ଜିତ ହେବ, ଏ ଅଭିଳାଷ ମଧ୍ୟ କବିଙ୍କର ନ ଥିଲା । ସେ ମାନବ ମଧ୍ୟରେ ଦେବତାର ଦର୍ଶନ କରିଛନ୍ତି; ମାନବସେବାରେ ମାଧବ ସେବାର ଫଳ ମିଳିବ ବୋଲି ବିଶ୍ୱାସ କରି ମାନବଚରଣରେ ନିଜର ମଥା ଲଗାଇବାକୁ କୁଣ୍ଠା ପ୍ରକାଶ କରିନାହାନ୍ତି । କବି ସେଥିପାଇଁ ଲେଖିଛନ୍ତି—

"ଯେତେ ଅହଂକାର ଅଛୁ ମୋର ହର
ହର ନଅ ଏହି ପ୍ରାର୍ଥନା
ଦେଉଛ ମୁକତି ଲୋଡ଼ା ନାହିଁ ମୋର
ଦେଶର ମୁକତି ବାସନା ।
ଦେଶ ଲାଗି କରେ ଯେତେ କିଛି କାମ
ନ ଖୋଜେ କ୍ଷମତା ନ ଖୋଜେ ମୁଁ ନାମ
ଜୀବ ସେବାରେ ମୋ ଦିନ କଟିଯାଉ
ଶିବମୟ ହେଉ ସାଧନା ।"
( ବନ ଫୁଲପଣ ଝିଙ୍କ୍ ପତ୍ରେ )

ବୀରକିଶୋର ସତ୍ୟାଗ୍ରହୀ ହିସାବରେ ନିଆଁ ସହିତ ଖେଳିଥିଲେ । ନିନ୍ଦା, ଅପମାନ ଏବଂ ଜେଲ ବରଣ କରିଥିଲେ ବାରମ୍ବାର । ତାଙ୍କ ଲେଖନୀରୁ ଯେଉଁ ଅଗ୍ନିବର୍ଷୀ କବିତାର ଝଙ୍କାର ଉଠିଥିଲା, ତାହା ବାନରସେନାମାନଙ୍କ ପ୍ରାଣରେ ଭରି ଦେଇଥିଲା ଭରସା, ଆତ୍ମବିଶ୍ୱାସ ଜାତୀୟତାବୋଧ ଏବଂ ବିପ୍ଳବର ଅନୁପ୍ରେରଣା । ବୀରକିଶୋରଙ୍କ କବିତା ଦିନେ ଏ ଦେଶରେ ବିଦେଶୀ ସରକାର ବିରୁଦ୍ଧରେ ପ୍ରତ୍ୟକ୍ଷ ବିପ୍ଳବ ପାଇଁ ଜାତି-ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରିଥିଲା ।

ଏହା ସତ୍ୟ ଯେ ଆହ୍ୱାନ-କବିତା ଅତ୍ୟନ୍ତ ଯୁଗୋପଯୋଗୀ ଏବଂ ଯୁଗଧର୍ମୀ । ତାହାର ଆବେଦନ ଏକ ନିର୍ଦ୍ଦିଷ୍ଟ ସମୟସୀମା ପାଇଁ ଉଦ୍ଦିଷ୍ଟ । ଲକ୍ଷ୍ୟ ପୂରଣ ହୋଇଗଲା ପରେ ସେହି ସାହିତ୍ୟର ଆଉ କୌଣସି ପ୍ରଭାବ ରହେନାହିଁ । ଚିରନ୍ତନ-ଧର୍ମିତାର ଅଭାବରୁ ସାହିତ୍ୟର ଇତିହାସ ପୃଷ୍ଠାରେ ସେହି ପ୍ରକାର କବିତା ଉଲ୍ଲେଖଯୋଗ୍ୟ ସ୍ଥାନ ଗ୍ରହଣ କରିପାରନ୍ତି ନାହିଁ ।

ସ୍ୱାଧୀନତା ଆନ୍ଦୋଳନ କାଳରେ ବହୁ ଆହ୍ୱାନ-କବିତା ଶୁଣା ଯାଉଥିଲା, ଗାନ କରାଯାଉଥିଲା । ଲୋକମାନେ ଆଦରରେ ମନେ ରଖି ଗାଉଥିଲେ, ଉଦ୍‌ବୁଦ୍ଧ ହେଉଥିଲେ । ମାତ୍ର ସ୍ୱାଧୀନତା ଆନ୍ଦୋଳନ ଇତିହାସରେ ପରିଣତ ହୋଇଗଲା ପରେ ସେହି ଶ୍ରେଣୀର କବିତା ଆଉ ସ୍ମରଣୀୟ ହୋଇ ରହିଲା ନାହିଁ ।

ବୀରକିଶୋରଙ୍କ ରଚିତ କବିତା ଆହ୍ୱାନ ଶ୍ରେଣୀର ହେଲେହେଁ ଏବଂ ବହୁକାଳ ତାର ବୈପ୍ଳବିକ ଭୂମିକା ନିର୍ବାହ କରିଥିଲେ ହେଁ ସେଥିରୁ ଅଧିକାଂଶ ରସୋତ୍ତୀର୍ଣ୍ଣ ଏବଂ ଚିରନ୍ତନ ସୌନ୍ଦର୍ଯ୍ୟର ଅଧିକାରୀ । ପର୍ଯ୍ୟାୟକ୍ରମେ ବୀରକିଶୋରଙ୍କ କବିପ୍ରତିଭାର ବିକାଶ ପର୍ଯ୍ୟାଲୋଚନା କଲେ ତାଙ୍କର କବିତାର ସୌନ୍ଦର୍ଯ୍ୟ ଏବଂ ମୂଲ୍ୟବୋଧ ସ୍ୱୀକାର କରାଯାଇପାରିବ ।

---

# "ବୀର-କବି"ର ଅଭ୍ୟୁଦୟ

ଇଂରେଜ ଅମଳରେ ଘରର ମୁରବିମାନେ ଭାବୁଥାଆନ୍ତି, ପିଲାମାନେ ପାଠ ପଢ଼ି କପରି ହାକିମ ହେବେ । ଇଂରେଜ ସରକାରଙ୍କ ଦପ୍ତରରେ ରାଜକର୍ମଚାରୀ ହେଲେ ଘରର ସମ୍ମାନ ବଢ଼ିବ, ସମାଜରେ ପ୍ରତିଷ୍ଠା ଆସିବ, ଏବଂ ସାଧାରଣ ଲୋକେ ଖାତିର କରିବେ । ଏହିପରି ସାମାଜିକ ପରିସ୍ଥିତିରେ ବୀରବାବୁ କଟକ ସହରରେ ଟାଉନ ଭିକ୍ଟୋରିଆ ସ୍କୁଲରେ ପଢ଼ୁଥାଆନ୍ତି । ସେତେବେଳେ ସେ ମାଟ୍ରିକ୍ୟୁଲେସନ ସେକେଣ୍ଡ କ୍ଲାସର ଛାତ୍ର । ଏହି ସ୍କୁଲର ପ୍ରତିଷ୍ଠାତା ଓ ପରିଚାଳକ ଥିଲେ ଭକ୍ତକବି ମଧୁସୂଦନ ରାଓ । ସେ ମଧ୍ୟ ଶିକ୍ଷା ବିଭାଗର ଜଣେ ସମ୍ମାନିତ ପରିଦର୍ଶକ କର୍ମଚାରୀ ଥିଲେ । ବାଳକ ବୀରକିଶୋର ଏହି ଛାତ୍ର ଜୀବନରୁ ଭକ୍ତ କବିଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲେ । ସେହି ଘଟଣାଟିର ସ୍ମୃତିଚାରଣ କରି ଶ୍ରୀ ବିନୋଦ କାନୁନ୍‌ଗୋ ଲେଖିଛନ୍ତି—

"ଭକ୍ତକବି ମଧୁସୂଦନ ରାଓ ସେହି ସ୍କୁଲର ( ଟାଉନ୍ ଭିକ୍ଟୋରିଆ ସ୍କୁଲ ବା ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ ) ପ୍ରତିଷ୍ଠାତା ତଥା ସେକ୍ରେଟେରୀ ଥାଆନ୍ତି । ସେ ମଝିରେ ମଝିରେ ବରାବର ଆସି ପିଲାଙ୍କୁ ଇଂରାଜୀ ପଢ଼ାନ୍ତି । ଦିନେ କହିଲେ—'ମୁଁ ତ ତୁମମାନଙ୍କୁ ପ୍ରତିଦିନ ପ୍ରଶ୍ନ ପଚାରୁଛି, ତୁମେମାନେ ଆଜି ମୋତେ କିଛି ପଚାର ।' ପାଞ୍ଚ-ମିନିଟ୍ ସମୟ ଦେଲେ । ଯାହାର ଯାହା ପଚାରିବାର କଥା, ଖାତାରେ ଲେଖି ସମସ୍ତେ ତାଙ୍କୁ ଦେଖାଇଲେ । ପ୍ରତ୍ୟେକ ପ୍ରଶ୍ନର ଉତ୍ତର ସେ ଦେଇ ଦେଇ ଚାଲିଲେ । ବୀରକିଶୋରଙ୍କ ପ୍ରଶ୍ନ ବେଳକୁ କେବଳ ଏତିକି କହିଲେ—"କାଲିକି ତମ ପ୍ରଶ୍ନର ଉତ୍ତର ମିଳିବ ।" ତାଙ୍କ ଖାତାଟିକୁ ନେଇଗଲେ । ତାହା ପରଦିନ କ୍ଲାସରେ ପହଞ୍ଚିଲାକ୍ଷଣି ପ୍ରତ୍ୟେକ ପିଲାଙ୍କୁ ପଚାରିଲେ—"ତୁମେ କେଉଁ ରଙ୍ଗକୁ ଭଲ ପାଅ ।" କିଏ କହିଲା ନାଲି, କିଏ କହିଲା ନେଳି, କିଏ କହିଲା ହଳଦିଆ । ଜଣେ କହିଲା, କାଚ ଗୋଟାକ ଭିତରେ ଯେଉଁ ରଙ୍ଗ ସେଇଟା ମୋତେ ଭଲଲାଗେ । ବୀରକିଶୋର କହିଲେ—"ମୋତେ ଗଛ, ପତ୍ର, ଘାସ ପତ୍ରଆର ରଙ୍ଗ ସବୁ ଭଲ ଲାଗେ ।" ସଙ୍ଗେ ସଙ୍ଗେ ଭକ୍ତକବିଙ୍କ ପାଟିରୁ ବାହାରିଲା—"ତମ ପ୍ରଶ୍ନର ଉତ୍ତର ମିଳିଗଲା । ତମର ଆଖି ଅଛି । ତୁମେ କବି ହେବ । ତମ ଖାତାରେ ଲେଖି ପଚାରିଥିଲ – ମୁଁ କେମିତି କବି ହେବି ? ତାହାର ଉତ୍ତର ନିଜେ ଦେଲ ।" ତାଙ୍କରି ପ୍ରେରଣାରେ ଉତ୍ସାହିତ ହୋଇ ତହିଁ ଆରଦିନ ସେ ଇଂରାଜୀରୁ ଅନୁବାଦ କରି ଲେଖିପକାଇଲେ,

"ଟୋପି ଟୋପି ପାଣି ମିଶି ସାଗର
ଟିକି ଟିକି ବାଲି ମିଶି ଭୂଧର ।"

ସେ କାଳରେ 'ମୁକୁର' ପତ୍ରିକାରେ ସେଇଟି ପ୍ରକାଶିତ ହେଲା । ତାଙ୍କ ବନ୍ଧୁମାନଙ୍କୁ ଦେଖାଇ ସେ ଆନନ୍ଦରେ ଫୁଲି ଉଠୁଥାଆନ୍ତି । ସେହି ସମ୍ପର୍କରେ ବୀରବାବୁ କୁହନ୍ତି—କେତେ ଜଣ ପିଲା ମୋତେ ଥଟ୍ଟାରେ କହିଲେ "ବୀର କବି ।"(୧୫)

ବୀରକିଶୋରଙ୍କ ବକ୍ତବ୍ୟ ଲିପିବଦ୍ଧ କରି ବିନୋଦବାବୁ ଲେଖିଛନ୍ତି ଯେ ତରୁଣ ବୀରକିଶୋର ବଡ଼ଦିନ ଛୁଟିରେ ଗାଁକୁ ଯାଇ ନିଜର କବିତାଟି ଗୋବିନ୍ଦ ଅଜାଙ୍କୁ ଦେଖାଇଲେ । ଭାବିଥିଲେ ମଧୁସୂଦନ ରାଓଙ୍କ ପରି ଗୋବିନ୍ଦ ଅଜା ମଧ୍ୟ ପ୍ରଶଂସା କରିବେ । ମାତ୍ର ଦୁର୍ଭାଗ୍ୟକ୍ରମେ ସେ ଗାଳି ଖାଇଲେ । ସେତେବେଳେ କବିମାନେ ବୋଧହୁଏ ସାଧାରଣ ଲୋକଙ୍କଦ୍ୱାରା ସମ୍ମାନିତ ହେଉ ନ ଥିଲେ । ସେମାନେ କବିତାର ମୂଲ୍ୟ ଅବା ଉପଲବ୍ଧି କପରି ? ପାଠ ପଢ଼ି ଡେପୋଟି ହେବାର ସ୍ୱପ୍ନ ନ ଦେଖି କବିତା ଲେଖିବା ଅର୍ଥ ପାଠପଢ଼ାରେ ଚମ୍ପୁକୁଟିବା । ବୀରକିଶୋର ନିରୁତ୍ସାହିତ ହୋଇ ଆଉ କବିତା ଲେଖିବେ ନାହିଁ ବୋଲି ସ୍ଥିରକଲେ । କିନ୍ତୁ ସୂର୍ଯ୍ୟାଲୋକକୁ ମେଘର ଆବରଣ କେତେ କାଳ ଅବା ଘୋଡ଼ାଇ ରଖିପାରିବ ?

ସୌଭାଗ୍ୟକ୍ରମେ କବି ନାରାୟଣମୋହନ ଦେ ବୀରକିଶୋରଙ୍କର ଶିକ୍ଷାଗୁରୁ ଥିଲେ । ଅବସର ସମୟରେ କବି ନାରାୟଣମୋହନ ଦେ ମନରୁ କବିତା ତାକି ଦିଅନ୍ତି ଏବଂ ତାହାକୁ ଲେଖିରଖନ୍ତି ଅନୁଗତ ଛାତ୍ର ବୀରକିଶୋର । ତାଙ୍କର ତରୁଣ ପ୍ରାଣ ପୁଲକିତ ହୋଇଉଠେ । ଦିନେ ଶିକ୍ଷାଗୁରୁଙ୍କ ଆଗରେ କବି ନିଜର ମନର ବେଦନା ପ୍ରକାଶ କଲେ ଏବଂ ସେ କବିତା ଲେଖିବା ପରେ କପରି ଗୁରୁଜନଙ୍କଦ୍ୱାରା ଲାଞ୍ଛିତ ହୋଇଛନ୍ତି, ତାହା ମଧ୍ୟ ପ୍ରକାଶ କଲେ ।

ଆଦର୍ଶ ଶିକ୍ଷକ ନାରାୟଣମୋହନ ଦେ ଛାତ୍ର ବୀରକିଶୋରଙ୍କୁ ଉତ୍ସାହିତ କଲେ । କାବ୍ୟସାଧନା ଏକ ପବିତ୍ର ଏବଂ ମହତ କାର୍ଯ୍ୟ ବୋଲି ତାଙ୍କର କିଶୋର ପ୍ରାଣରେ ବିଶ୍ୱାସ ଆଣିଦେଲେ । ଫଳରେ ସେହିଦିନୁ ବୀରକିଶୋରଙ୍କ ଲେଖନୀ ଜାଗ୍ରତ ହୋଇ ଉଠିଲା । କବିତା ଲେଖିବା ପାଇଁ ତାଙ୍କୁ ଆଉ କିଏ ଅଟକାଇବ ? ବୀରକିଶୋର ଥିଲେ ପଲ୍ଲୀର ଅଧିବାସୀ । ପଲ୍ଲୀ ପ୍ରକୃତିର ନିରଳସ ମାଧୁରୀ ତାଙ୍କର ହୃଦୟରେ ଗଭୀର ରେଖାପାତ ସୃଷ୍ଟି କରିଥିଲା । ତାଙ୍କର ପ୍ରଥମ କବିତାରେ ସେହି ରମଣୀୟ ଅନୁଭୂତି ରୂପାୟିତ ହୋଇଥିବା ଜଣାଯାଏ । ତାଙ୍କର ପ୍ରଥମ କବିତାଟି ଥିଲା—

୧୫ । ଜାତୀୟ କବି ବୀରକିଶୋର—ବିନୋଦ କାନୁନଗୋ—୧୯୬୭—ପୃ ୧୬

"କେଉଁ ଦୂର ଦେଶ ବାଙ୍କୋଇ ସୁଇରେ
କେଣେ ଯିବୁ ମୋତେ କହ
ସ୍ୱତ ନ ପାହୁଣୁ ତରବର କିଆଁ
ସାଥୀ ହୋଇ ଯିବା ରହ ।
ଆସିଥିଲେ କାଲି ରଜନୀ ସୁନ୍ଦରୀ
ପିନ୍ଧି ତାରା-ଫୁଲ ହାର
ଆସିଥିଲେ ଆମ ଜହ୍ନମାମୁ ଜନେ
ସଙ୍ଗେ ଦେଇ ସୁଧା-ସାର ।
ଆସିଥିଲୁ କିରେ ତାଙ୍କର ସଙ୍ଗତେ
ପଞ୍ଜି ରୁ ରହିଲୁ ପଛେ
ଭଙ୍ଗୁର ଉବର ଛଟାସନ ଭାଇ
ବାଛିନେଲୁ ଦୂବଗଛେ ।"

ମାତ୍ର ଷୋଳବର୍ଷ ବୟସବେଳେ କବିଲେଖନୀରୁ ଏହି କବିତାଟି ଝରି ଆସିଥିଲା । ତେଣୁ ସେ ଯେ ଜଣେ ବଡ଼ କବି ହେବେ, ଏହା ଏହି ତରୁଣ ବୟସର ସର୍ଜନା-ସ୍ୱପ୍ନରୁ ହିଁ ପ୍ରତୀୟମାନ ହେଉଥିଲା ।

ସେ ହେଉଛି ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକର କଥା । ୧୯୨୦ ସାଲର ଆରମ୍ଭରେ 'ଭାରତୀ ମନ୍ଦିର' ନାମରେ ଗୋଟିଏ ପାଠାଗାର ବାଖରାବାଦଠାରେ କେତେକ ଉତ୍ସାହୀ ଜାତୀୟତା ମନ୍ତ୍ରରେ ଦୀକ୍ଷିତ ତରୁଣମାନଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ସେମାନଙ୍କ ମଧ୍ୟରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ଭାଗୀରଥି ମହାପାତ୍ର, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ ଏବଂ ହରେକୃଷ୍ଣ ମହତାବ । ଦେଶବିଦେଶର ବହୁ ସମ୍ବାଦପତ୍ର ଏଠାରେ କେବଳ ରଖାଯାଉ ନ ଥିଲା, ପାଠାଗାରକୁ ସମୃଦ୍ଧ କରିବା ପାଇଁ ବିପୁଳ ଉଦ୍ୟମ କରାଯାଇଥିଲା । ବିଭିନ୍ନ ଦେଶର ସ୍ୱାଧୀନତା ଆନ୍ଦୋଳନର ଇତିହାସ ପାଠ କରି ତରୁଣମାନେ ଉତ୍ସାହିତ ହେଉଥିଲେ । ସାଧାରଣ କ୍ଷେତ୍ରରେ ଆଗ୍ରହଥିବା ବହୁ ବ୍ୟକ୍ତି ନିମନ୍ତ୍ରିତ ହୋଇ ଏହି ଅନୁଷ୍ଠାନ ଅନୁକୂଳରେ ଆଲୋଚନାରେ ଅଂଶଗ୍ରହଣ କରୁଥିଲେ । ଏହାଦ୍ୱାରା ତରୁଣମାନଙ୍କର ଚିନ୍ତାଧାରା ବିସ୍ତାରିତ ଏବଂ ସମୃଦ୍ଧ ହେଉଥିଲା । ଏହି ସମୟରେ ଗାନ୍ଧିଜୀଙ୍କ ଅସହଯୋଗ ପ୍ରସ୍ତାବ ଆଲୋଚନା ପାଇଁ କଲିକତା ନଗରୀରେ ଜାତୀୟ କଂଗ୍ରେସର ସ୍ୱତନ୍ତ୍ର ଅଧିବେଶନ ଆହୂତ ହୁଏ । ଏହି ଅଧିବେଶନର ଆଲୋଚନା ଜାଣିବା ପାଇଁ 'ଭାରତୀ ମନ୍ଦିର' ତରଫରୁ ହରେକୃଷ୍ଣ ମହତାବ କଲିକତା ଯାଇଥିଲେ

୨୭ । ଜାତୀୟ କବି ବୀରକିଶୋର—ବିନୋଦ କାନୁନ୍‌ଗୋ—୧୯୭୭

ବୋଲି ସେ ତାଙ୍କର ଜୀବନଚରିତ "ସାଧନାର ପଥେ"ରେ ଉଲ୍ଲେଖ କରିଅଛନ୍ତି । ଏହି ଅନୁଷ୍ଠାନରେ ସମାଜସେବୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଜରିଆରେ ତରୁଣ ବୀରକିଶୋର ଆସି 'ଭାରତୀ ମନ୍ଦିର'ର ଅଗ୍ରଗାମୀ ବନ୍ଧୁମାନଙ୍କ ସହିତ ମିଳିତ ହେଲେ । ଫଳରେ ତାଙ୍କର ଜୀବନର ଗତିଧାରା ବଦଳିଗଲା । ସେ ସରକାରୀ କଲେଜରେ ବାଧ୍ୟ ନ ହୋଇ ଗାନ୍ଧିଜୀଙ୍କ ଡାକରାରେ ଅସହଯୋଗୀ ହୋଇଗଲେ । ଏହି ଅସହଯୋଗ ଆନ୍ଦୋଳନ ହିଁ ବୀରକିଶୋରଙ୍କ ପ୍ରାଣରେ ଆଣିଦେଲା ଅଭୂତପୂର୍ବ ପ୍ରେରଣା ଏବଂ ସେହି ଉଦ୍‌ବେଳନ ମଧ୍ୟରୁ ଜନ୍ମଗ୍ରହଣ କଲେ ଜାତୀୟକବି ବୀରକିଶୋର । ସେ ନିଜେ କେବଳ ଅସହଯୋଗୀ ହୋଇ ଅନିଶ୍ଚିତ ଭବିଷ୍ୟତର ଅନ୍ଧକାର ମଧ୍ୟକୁ ଡ଼ିଏଁ ଡ଼ିଏଁ ଲମ୍ଫ ପ୍ରଦାନ କଲେ ନାହିଁ, ତାଙ୍କର ଅଗ୍ନିଗର୍ଭ କବିତା ବହୁ ତରୁଣଙ୍କ ପ୍ରାଣରେ ଉଚ୍ଛ୍ୱାସ ଆଣିଦେଲା । ଫଳରେ ସେମାନେ କୌଣସି ବିପଦ ଓ ଲାଞ୍ଛନାକୁ ଖାତିର ନ କରି ଅସହଯୋଗ ଆନ୍ଦୋଳନରେ ଝାସ ଦେଲେ ।

ସ୍ୱାଧୀନତା ସଂଗ୍ରାମୀ ବିନୋଦ କାନୁନ୍‌ଗୋ ସ୍ୱୀକାର କରିଛନ୍ତି ଯେ ବୀରବାବୁଙ୍କର କବିତା ତାଙ୍କୁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ପ୍ରେରଣା ଦେଇଥିଲା । ସେହି ଗୀତଟି ହେଲା—

"ଜାତି ଇତିହାସ ହୋଇଲେ ପଠିତ
ଶୁଣି ବଂଶଧର ହୋଇବେ ଲଜ୍ଜିତ
ନରହନ୍ତାର କଂସେଇଶାଳେ ମୁଁ
ଲେଖୁଥିଲି ବସି ରଚନା ।"

ଭବିଷ୍ୟତ ବଂଶଧରଗଣ କହିବେ ଯେ ଦେଶର ଦୁର୍ଗତି ଓ ମାତୃଭୂମିକୁ ଚରମ ଅପମାନିତ କରି ଏହି ସନ୍ତାନଗଣ ସ୍ଥିର ହୋଇ ରହିଥିଲେ ଏବଂ ସ୍ୱୀୟସ୍ୱାର୍ଥ ସାଧନ ପାଇଁ ଜୀବନ ଠାଅର କାରଖାନାରେ କର୍ମରତ ରହିଥିଲେ । ଗାନ୍ଧିଜୀ ଆହ୍ୱାନ ଦେଲେ ସ୍କୁଲ, କଲେଜ, ସରକାରୀ ଅଫିସ ସହିତ ଅସହଯୋଗ କରିବା ପାଇଁ । ନେତାମାନଙ୍କର ଭାଷଣଠାରୁ ବୀରକିଶୋରଙ୍କର କବିତା ଅଧିକ ପ୍ରଭାବଶାଳୀ ଏବଂ ଫଳପ୍ରସୂ ହୋଇଥିଲା ବୋଲି ପରିଣତ ବୟସରେ ସ୍ୱାଧୀନତା ସଂଗ୍ରାମୀମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିଥାଆନ୍ତି । ବୀରବାବୁ ଲେଖିଲେ—

"ରଣ ସମୟରେ ବନ୍ଧୁ ଯୋଗିବାକୁ
ମୋତେ ଅଛି ତୁମେ ବଳାନା
ଛାତିର ରକତ ତାତି ଉଠେ ମୋର
ବାଜିବାକୁ ଯୁଦ୍ଧ ବାଜଣା ।"

ଯେଉଁମାନେ ବିଦେଶୀ, ଅତ୍ୟାଗ୍ରସ୍ତ ଇଂରେଜ ସରକାରଙ୍କ ଦପ୍ତରରେ ଉଚ୍ଚପଦରେ ଅଧିଷ୍ଠିତ ହେବାର ସ୍ୱପ୍ନ ଦେଖୁଥିଲେ ଏବଂ ଅର୍ଥ ଉପାର୍ଜନ କରି ନିଜର ହୀନସ୍ୱାର୍ଥ ଚରିତାର୍ଥ କରିବା ପାଇଁ ପରିକଳ୍ପନା କରୁଥିଲେ, ସେଇମାନଙ୍କର ଜଡ଼ତା ଭାଙ୍ଗିଦେବା ପାଇଁ କବି ବୀରକିଶୋର ଲେଖିଲେ—

"କି ବହି ଘୋଷିବି ପଢ଼ିବି କି ପାଠ
କି ଅଙ୍କ କଷିବି ହୋଇ ଗବ କାଠ
ଯୁବକ ହୋଇ କି ବକ ହୋଇବି ମୁଁ
ବିବେକକୁ କରି ବଞ୍ଚନା ?
ଟଙ୍କା ନୁହେଁ ମୋର ଜୀବନର ଲକ୍ଷ୍ୟ
ଶଙ୍କା ନୁହଇ ତ ଯୁବକ ପୋଷାକ
ଆଖିରେ ଲଗାଇ ଅନ୍ଧପୋଟଳି କି
ଦେଖୁଥିବି ଦେଶ ଯାତନା ?"

---

# ବିପ୍ଳବର ବାର୍ତ୍ତାବହ ବୀରକିଶୋର

## 'ମୋହନବଂଶୀ'ର ସମ୍ମୋହନ ଧ୍ୱନି

'ମୋହନବଂଶୀ' ୧୯୨୨ ସାଲରେ ସ୍ୱନାମଧନ୍ୟ ବ୍ରଜସୁନ୍ଦର ଦାସଙ୍କ ମୁକୁର ପ୍ରେସରୁ ଆତ୍ମପ୍ରକାଶ କଲା । ଦେଶପ୍ରାଣ ମଧୁସୂଦନ ଦାସଙ୍କ ନାମରେ ପୁସ୍ତକଟି ଉତ୍ସର୍ଗ କରାଯାଇଥିଲା । ତତ୍କାଳୀନ ଓଡ଼ିଶାରେ ଏହି ଦୁଇଜଣ ବ୍ୟକ୍ତି ଥିଲେ ଉତ୍କଳବାସୀଙ୍କର ଅଗ୍ରଗଣ୍ୟ ନେତା । ଇଂରେଜ ସରକାର ମଧ୍ୟ ସେ ଦୁହିଁଙ୍କୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ସେତେବେଳେ ବୀରକିଶୋର କଟକର ପି. ଡବ୍ଲ୍ୟୁ. ଡିରେ କିରାଣି ଚାକିରି କରୁଥାଆନ୍ତି ମାସିକ ପଇଁତିରିଶ ଟଙ୍କାରେ । ସେ କାଳର ହିସାବରେ ଜଣେ ସାଧାରଣ ଭାରତୀୟ ପାଇଁ ଏହି ବେତନ ଯଥେଷ୍ଟ ଆକର୍ଷଣୀୟ ଥିଲା । ବୀରକିଶୋରଙ୍କ ସାନ ଭାଇ ହଠାତ୍ ଜାତୀୟ କଂଗ୍ରେସର ଆହ୍ୱାନରେ ବାନରସେନାରେ ଯୋଗଦେଇ ଘରଛାଡ଼ି ସ୍ୱରାଜ୍ୟ ଆଶ୍ରମରେ ଯାଇ ରହିଲେ । ପରେ ଯେ ଯାହା ଭାବନ୍ତୁନା କାହିଁକି, ବୀରକିଶୋରଙ୍କ ମନ ଆଉ ସରକାରୀ ଦପ୍ତରରେ ବାନ୍ଧି ହୋଇ ରହିବାକୁ ଡାକିଲା ନାହିଁ । ସେ ଛଦ୍ମ-ନାମରେ ଜାତୀୟବାଦୀ କବିତା ଲେଖିଲେ । ନିଜ ସାନ ଭାଇ 'ବାନାମ୍ବର' ନାମରେ ତାହା ପ୍ରକାଶିତ ହେଲା । ସରକାରଙ୍କ ଦୃଷ୍ଟିପଡ଼ିଲା ବେଳକୁ ସେଥିରୁ ପାଞ୍ଚହଜାର ବହି ବିକ୍ରି ହୋଇସାରିଲାଣି । ବହି ବାଜ୍ୟାପ୍ତ ହେଲାବେଳକୁ ଜଣାଗଲା ଯେ ଅସଲ ଲେଖକ ହେଉଛନ୍ତି ବୀରକିଶୋର ।

ଏହି ବହିଟିର ଆତ୍ମପ୍ରକାଶର ଇତିହାସ ସ୍ମରଣକରି ସ୍ୱାଧୀନତା ସଂଗ୍ରାମୀ ସୁସାହିତ୍ୟିକ ବିନୋଦ କାନୁନ୍‌ଗୋ ଲେଖିଥିଲେ :—

"ତିନିଅଣା ମୂଲ୍ୟର ଏ ବହିଟି ହେଉଛି ଓଡ଼ିଆ ଭାଷାର ପ୍ରଥମ ରାଜନୈତିକ ବହି । କେବଳ ଗଞ୍ଜାମରେ ଏହି ବହି ତିନିହଜାର ବିକ୍ରି ହୋଇଗଲା ।

'ମୋହନବଂଶୀ' ବହି ଲେଖା, ଛପା ଓ ବିକ୍ରି ଏଭଳି ଆକସ୍ମିକ ଭାବରେ ହୋଇଗଲା ଯେ ସରକାରୀ ଲୋକେ ଅସୁବିଧାରେ ପଡ଼ିଗଲେ । ସେ ସମ୍ପର୍କରେ ବୀରବାବୁଙ୍କୁ ପଚାରିଲେ ସେ କହନ୍ତି—"ଖୁବ୍ କମ୍ ଦିନରେ ବହିତକ ବିକ୍ରି ହୋଇଗଲା । ତାହାପରେ ବହୁତ ଖୋଳତାଡ଼୍ ହେଲା । ଲେଖକଙ୍କୁ ଧରିବା ପାଇଁ ଘର ଖାନତଲାସ ହେଲା । କିନ୍ତୁ କି ପ୍ରମାଣ ଅଛି ଯେ କିଏ ମୋତେ ଧରିବ ? ଅବଶ୍ୟ ସମସ୍ତେ ଜାଣିଯାଉଥାନ୍ତି ଯେ ମୁଁ ଲେଖିଛି । ସରକାର ଚେଷ୍ଟାକଲେ ମୋକଦ୍ଦମା କରିବା ପାଇଁ । ଯେଉଁ ବହିଟି

ମଧୁବାବୁଙ୍କୁ ଉତ୍ସର୍ଗ କରାଯାଇଛି, ପୁଣି ବ୍ରଜସୁନ୍ଦର ବାବୁଙ୍କ ପ୍ରେସରେ ଛପାଯାଉଛି, ତା' ବିରୁଦ୍ଧରେ ମକଦ୍ଦମା ହୁଅନ୍ତା ବା କିପରି ? ଏ ଦୁଇ ଜଣଙ୍କ ଉପରେ ବ୍ରିଟିଶ ସରକାରଙ୍କର ଖୁବ୍ ବିଶ୍ୱାସ ଥିଲା । ବହିଟିକୁ 'ବେଆଇନ୍' କରିଦିଆଗଲା ଓ ବହିର ପ୍ରଚ୍ଚାର ଆଉ ହୋଇପାରିବ ନାହିଁ ବୋଲି କଟକଣା କରାଗଲା । ହେଲେ ସେତେବେଳକୁ ବହିତକ ବିକି ସରିଛି । ସବୁ କଥା ଗୁପିତିଆଗଲା ସିନା, ମୁଁ କିନ୍ତୁ ଦାଗୀ ହୋଇଗଲି—ବିପ୍ଲବୀଙ୍କ ତାଲିକାରେ ମୋର ନାମ ରହିଗଲା ।'' [୨୨]

'ମୋହନବଂଶୀ'ରେ ସଙ୍କଳିତ 'ଉତ୍କଳଜନନୀ' କବିତାଟି ଥିଲା ଏକ ଭିନ୍ନ ଢାଞ୍ଚାର । ପୂର୍ବସୂରୀମାନେ ଉତ୍କଳଜନନୀଙ୍କୁ ସ୍ମରଣ କରି ପ୍ରାଚୀନ ଐତିହ୍ୟର ଗୌରବଗାନ କରି ଜାତୀୟତାବୋଧ ଜାଗ୍ରତ କରିବା ପାଇଁ ଉଦ୍ୟମ କରିଥିବା ଜଣାଯାଏ । କିନ୍ତୁ ବୀରକିଶୋର ଭାରତୀୟ ରାଜନୈତିକ ଆକାଶର ଚିତ୍ର ପ୍ରଦାନ କରିଛନ୍ତି । ପରାଧୀନ ଭାରତବର୍ଷର ଚତୁର୍ଦ୍ଦିଗରେ ଜାତୀୟ ଆନ୍ଦୋଳନ ପାଇଁ ଉଦ୍ୟମ ଅବ୍ୟାହତ ରହିଥିବାବେଳେ ଓଡ଼ିଶା ପ୍ରଦେଶରେ କୌଣସି ଚଞ୍ଚଳତା ପ୍ରକାଶ ପାଉନାହିଁ । ସୁପ୍ତ ଭାରତୀୟମାନେ ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ ଆହ୍ୱାନରେ ନୂତନ ଆଶାର ଆଲୋକର ସନ୍ଧାନ ପାଇଛନ୍ତି । ସେଥିପାଇଁ ବଙ୍ଗଦେଶରେ ବିଶ୍ୱକବି ରବୀନ୍ଦ୍ରନାଥ, ବିପ୍ଳବୀ ଓ ଯୋଗୀ ଅରବିନ୍ଦ, ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ, ପଞ୍ଜାବରେ ଲାଲା ଲଜପତ ରାୟ, ଉତ୍ତରପ୍ରଦେଶରେ ଆଲି ଭାଇଦ୍ୱୟ, ମଦନମୋହନ ମାଳବ୍ୟ, ମୋତିଲାଲ ନେହେରୁ, ବିହାରରେ ରାଜେନ୍ଦ୍ର ପ୍ରସାଦ ଏବଂ ସର୍ବୋପରି ମହାନୁଭବ ଦୀନବନ୍ଧୁ ଆଣ୍ଡ୍ରୁଜ ସାହେବ, ପ୍ରଭୃତି ଏହି ଆନ୍ଦୋଳନରେ ସେନାପତି ହୋଇଥିଲାବେଳେ ଆମେ ଅନଗ୍ରସର ଓଡ଼ିଶାରେ "ଦାନା କନା ଲାଗି କରୁଛନ୍ତି ଗିରି ଖୋଜୁଛୁ" ବୋଲି କବି କ୍ଷୋଭ ପ୍ରକାଶ କରିଛନ୍ତି । ପରିଶେଷରେ ସେ ଆହ୍ୱାନ ଜଣାଇଛନ୍ତି—

"ତୋହର ସନ୍ତାନ ବୋଲି ଯେତେ ଆମ
ହୃଦୟରେ ଥାଉ ଜ୍ଞାନ
ସତ୍ୟ ଯୋଗୁଁ ଆମ ଦେହ ଟଳିଯାଉ
ଧର୍ମ ଯୋଗୁଁ ଯାଉ ପ୍ରାଣ ।''

ଦେଶମାତାର କଲ୍ୟାଣ ପାଇଁ ନିର୍ବିକାର ଚିତ୍ତରେ ତାର ସନ୍ତାନମାନେ ଜୀବନକୁ ଉତ୍ସର୍ଗ କରିପାରିଲେ ସେମାନେ ନିଜକୁ ଧନ୍ୟ କରିପାରିବେ ବୋଲି କବିଙ୍କର ଅଭିବ୍ୟକ୍ତି ।

ସେହି ସମୟରେ ପଞ୍ଜାବରେ ଜାଲିଓ୍ୱାନାଓ୍ୱାଲାବାଗ୍‌ରେ ଇଂରେଜ ସୈନ୍ୟବାହିନୀର ନିର୍ମମ ଅତ୍ୟାଚାର ସମଗ୍ର ଦେଶରେ ଚହଳ ପକାଇ ଦେଇଥାଏ । ଆମେ ଭୀରୁ ଓ ହୀନବୀର୍ଯ୍ୟ

୨୨ । ଜାତୀୟ କବି ବୀରକିଶୋର—ବିନୋଦ କାନୁନ୍‌ଗୋ— ୧୯୭୭-ପୃ୩୫

ସ୍ବଭରେ ସେହି ଅପଯଶ ବରଦାସ୍ତ କରିଆନ୍ତି । କବିଙ୍କର ପ୍ରାଣରେ ଦାରୁଣ ଆଘାତ ସୃଷ୍ଟି ହେଉଛି । ସେ 'ଧର୍ମବାଣୀ' କବିତାରେ ଗୋଟିଏ ପଦ ବାରମ୍ବାର ଆବୃତ୍ତି କରିଛନ୍ତି— "ଯେ ଦେଶରେ ମୁହିଁ ଜନମ ନେଇଛୁ ଭାଇ" । ସେ ମନେପକାଇ ଦେଇଛନ୍ତି ଯେ ଏହି ଦେଶରେ ଦିନେ ମହାତ୍ମା ବୁଦ୍ଧଦେବ, ଧର୍ମାଶୋକ ଅଶୋକ, ମହର୍ଷି ଦଧୀଚି, ମର୍ଯ୍ୟାଦା-ପୁରୁଷୋତ୍ତମ ରାମଚନ୍ଦ୍ର, ମହାରଥୀ ଅର୍ଜୁନ, ମହାଯୋଗୀ ବିବେକାନନ୍ଦ, ମହାପୁରୁଷ ନାନକ, ସଂସ୍କାରକ ରାଜା ରାମମୋହନ, ଭକ୍ତ ନିତ୍ୟାନନ୍ଦ, ପ୍ରହ୍ଲାଦ ଓ ଧ୍ରୁବ ପ୍ରଭୃତି ଜନ୍ମଗ୍ରହଣ କରି ନିଜ ନିଜ କ୍ଷେତ୍ରରେ ମାତୃଭୂମିର ସେବା କରିବା ସଙ୍ଗେ ସଙ୍ଗେ ଅକ୍ଷୟ ଯଶର ଅଧିକାରୀ ହୋଇଗଲେ । ଅଥଚ ସେହି ପୁଣ୍ୟାତ୍ମାମାନଙ୍କର ବଂଶଧର ହୋଇ ଆମେ କେବଳ ବିଦେଶୀଙ୍କ ଅଧୀନରେ "ବାବୁ" ହେବାର ତପସ୍ୟାରେ ଲାଗିପଡ଼ିଛୁ । ଏଥିପାଇଁ ଆମର ଅତ୍ୟାଗ୍ରହୀ ଇଂରେଜ ସରକାରଙ୍କ ପ୍ରତି ନିବିଡ଼ ଆନୁଗତ୍ୟ ଏବଂ ଅଗାଧ ବିଶ୍ବାସ । ସେମାନଙ୍କର ରାଜତ୍ବ ଯୋଗୁ ଆମ ଦେଶର କି ପ୍ରକାର ଦୁର୍ଗତି ହୋଇଅଛି, ସେହି ବିଷୟରେ ଆମେ ଆଦୌ ସଚେତନ ହୋଇପାରିନାହୁଁ । ଦେଶର ଦୁର୍ଦ୍ଦଶା ବର୍ଣ୍ଣନା କରି କବି ଲେଖିଥିଲେ—

"ସୁନାର ଭାରତ ଆମ ହେଲା ଛାରଖାର
ଖାଇବାକୁ ନ ପାଇଲୁ ଓଳିଏ ଆହାର ।
ବିଦେଶୀ ଦରବେ ଆମ ଦେଶ ଗଲା ଭରି
ଯିବ କହିବାକୁ ଲୋକେ ମରୁଛନ୍ତି ଡରି ।
ମାମଲାରେ ଓଡ଼ିଶା ବିଲ ମାଗିଲେଣି ଭିକ
ସେ ପୂତନା ରାଜନୀତି ଭଲ କରି ଶିଖ ।
ରାଜନୀତି ଦେଖି ଆସ ଗ୍ରାମେ ଗ୍ରାମେ ଯାଇ
ଗଞ୍ଜାଇ ଅଫିମ ବିକା କାହିଁ ଥିଲା ନାହିଁ ।
ସ୍ଥାନେ ସ୍ଥାନେ ବସିଲାଣି ସୁରାର ଦୋକାନ
ତପୋବନ ହୋଇଅଛି ନରକ ଗୋଦାମ ।
ଏ ରାଜନୀତିରେ କି ବା ଦେଶର ଉନ୍ନତି
ବାଡ଼ ବୁଜିବାକୁ ଘରେ ନାହିଁଟି ଖଣ୍ଡିଏ ।
ହେର ଉଡ଼ିବାକୁ ଘରେ ବାଉଁ ଖଣ୍ଡେ ନାହିଁ
ଦେଢ଼ଶତ ବରଷର ଶିକ୍ଷା ଦେଖ ଭାଇ ।
ପଢ଼ି ପଢ଼ି ଆମ୍ଭେମାନେ ହେଲୁ ବଡ଼ ବାବୁ
ଜଣାଗଲା ଏତେଦିନେ ଆମ ଜାତି କାବୁ ।"

ଆଧୁନିକ ଓଡ଼ିଆ ସାହିତ୍ୟରେ ଏପରି ପ୍ରଚଣ୍ଡ ସମାଜସଚେତନ ଭାବନା ରୂପାୟିତ କରିବାରେ ବୋଧହୁଏ କବି ବୀରକିଶୋର ଉତ୍କଳମଣି ଗୋପବନ୍ଧୁଙ୍କ ପରେ ଦ୍ବିତୀୟ

ଶକ୍ତିଶାଳୀ ଲେଖକ ହେବେ । ସାହିତ୍ୟ ସଂସାର ଯେଉଁ ସମୟରେ ରୋମାଣ୍ଟିକ୍ କଳ୍ପନା ବିଳାସରେ ଉଲ୍ଲସିତ, ଜୀବନ-ବିମୁଖତା ଏବଂ ବୈପ୍ଳବିକ ଅନୁଚିନ୍ତା ଯେଉଁ ସମୟରେ ସାହିତ୍ୟର ମାନଚିତ୍ରରେ ଏକାନ୍ତ ଦୁର୍ଲ୍ଲଭ, ସେତିକିବେଳେ କବି ବୀରକିଶୋରଙ୍କ ଲେଖନୀରୁ ଏହିପରି ପ୍ରାଣପ୍ରଚୋଦନାମୂଳକ କବିତା ଏକ ନୂତନ ଦିଗନ୍ତ ସୃଷ୍ଟି କରିବାରେ ସହାୟକ ହୋଇଥିଲା । ଉତ୍କଳମଣି ଗୋପବନ୍ଧୁ ଯେଉଁପରି ଦେଶର ସ୍ୱାଧୀନତା ପାଇଁ ଉତ୍ସର୍ଗୀକୃତ କର୍ମୀମାନଙ୍କର ସେବା କାମନା କରୁଥିଲେ ଏବଂ ଅଭିଳାଷ ପୋଷଣ କରିଥିଲେ—"ଏ ଦେଶର ପଥେ ଯେତେ ଅଛି ଗାଡ଼, ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼" ସେହି ଆଦର୍ଶର ଅନୁରୋଧରେ ବୀରକିଶୋର ମଧ୍ୟ ଅହ୍ୱାନ ଜଣାଇଥିଲେ—

"ଏ ଜୀବନ ଦାନ କଲି ଦେଶ ଲାଗି ଭାଇ
ଆଗପଛ କଥା କିଛି ବାରେ ଚିନ୍ତା ନାହିଁ ।"

## "ରଣଦୁନ୍ଦୁଭି"—ଅହିଂସା ସଂଗ୍ରାମର ପାଞ୍ଚଜନ୍ୟ

"ରଣଦୁନ୍ଦୁଭି"ର ପ୍ରଥମ ପ୍ରକାଶ ହୋଇଛି ୧୯୩୦ ମସିହାରେ । ମାତ୍ର ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ସମୟରେ ଏହାର କବିତାଗୁଡ଼ିକ ସ୍ୱାଧୀନତା ସଂଗ୍ରାମର ସୈନିକମାନଙ୍କୁ ଅଭାବନୀୟ ପ୍ରେରଣା ଯୋଗାଇଥିଲା । ବୀରବାବୁଙ୍କର ରଚିତ ଏହି ଗୀତଗୁଡ଼ିକ ଗାଇ ଗାଇ ବାନରସେନାର ତରୁଣମାନେ ନିର୍ଭୀକ ଭାବରେ ନିର୍ବିକାର ଚିତ୍ତରେ ପୋଲିସ ଅତ୍ୟାଚାରକୁ ସହ୍ୟ କରୁଥିଲେ । ଅସୀ ବଳଠାରୁ ଯେ ମସୀର ବଳ ଅଧିକ ବୋଲି କୁହାଯାଇଥାଏ, ତାହା 'ରଣଦୁନ୍ଦୁଭି'ର କବିତା ବାସ୍ତବ ଯୁଦ୍ଧକ୍ଷେତ୍ରରେ ପ୍ରମାଣିତ କରି ଯୁଗାନ୍ତକାରୀ ଇତିହାସ ସୃଷ୍ଟି କରିସାରିଛି । ଏହି ପୁସ୍ତକ କିମ୍ବିତ ଉନ୍ନତ କଳେବର ଗ୍ରହଣ କରି ଯେତେବେଳେ ୧୯୭୨ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ମୁଦ୍ରଣ ହେଲା, ତାହାର 'ଇତିକଥା'ରେ କବି ବୀରକିଶୋର ଲେଖିଥିଲେ—

"ରଣଦୁନ୍ଦୁଭି" ଲେଖିଥିଲି ୧୯୩୦ ମସିହାରେ, ଲବଣ ସତ୍ୟାଗ୍ରହବେଳେ । ଏ ବହିର ଗୀତଗୁଡ଼ିକ ସେତେବେଳେ ସତ୍ୟାଗ୍ରହୀମାନେ ଗାଇ ଗାଇ ଲୁଣ ମାରିବାକୁ ଯାଉଥିଲେ ଏବଂ ଗିରଫ ହେଉଥିଲେ ।

ଶେଷରେ ବହିଟିକୁ 'ଲେଖକ ବୀରକିଶୋର' ନାମରେ ଛପାଇଲି । କୌଣସି ପ୍ରେସ ନିଜ ନାମ ଦେଇ ଏହାକୁ ଛପାଇବା ପାଇଁ ରାଜି ହେଲେ ନାହିଁ । ତେଣୁ ଏହାକୁ ଗୋଟିଏ ପ୍ରେସର ଛଦ୍ମନାମ ଦେଇ ଛପା ହେଲା । ପ୍ରେସ ନାମ ରହିଲା ରେଙ୍ଗୁନ୍ ବିପ୍ଳବୀ ପ୍ରେସ । ମୁଦ୍ରକ ମଧ୍ୟ ଛଦ୍ମବେଶୀ—ଇସ୍ପାଂ ପୁଙ୍ଗୀ । ପ୍ରକାଶକ ହେଲେ କାମଦେବ । ସେତେବେଳେ ବହିଟିର ଦାମ ଥିଲା ଏକ ଅଣା ।

ସେତେବେଳେ ଏହା ମାତ୍ର ବାର ପୃଷ୍ଠାର ବହିଟିଏ ଥିଲା । ମୋର ଆଉ କେତେଗୁଡ଼ିଏ ସଙ୍ଗୀତକୁ ଆଣି ବର୍ତ୍ତମାନ ସେହି ପୁରୁଣା "ରଣଦୁନ୍ଦୁଭି"ରେ ଯୋଡ଼ି ଦିଆଯାଇଛି ।

"ରଣଦୁନ୍ଦୁଭି" ଯେତେବେଳେ ପ୍ରକାଶିତ ହେଲା, ବ୍ରିଟିଶ ସରକାର ସଙ୍ଗେ ସଙ୍ଗେ ତାକୁ ବେଆଇନ କରିଦେଲେ ଓ ସବୁ ଛପା ବହିକୁ ବାଜ୍ୟାପ୍ତ କରିଦେବା ପାଇଁ ଆମ ଗୃହ ଓ ମୋ ଶ୍ୱଶୁରାଳୟ ଖାନତଲାସ କରିଥିଲେ ।

ରଣଦୁନ୍ଦୁଭିର କବିତାଗୁଡ଼ିକ ପାଠ କଲେ ୧୯୩୦ ସାଲର ଗାନ୍ଧୀଯୁଗର ଚିତ୍ର ପାଠକର ହୃଦୟ ପରଦାରେ ଭାସିଯାଏ । ଗାନ୍ଧିଜୀଙ୍କର ଅହିଂସା ସଂଗ୍ରାମକୁ ପ୍ରତିକ୍ରିୟାଶୀଳ ଲୋକେ ଦୁର୍ବଳର ଅସହାୟତା ବୋଲି ବିଗ୍ରହ କରୁଥିଲେ । ମାତ୍ର ଏତେବଡ଼ ବିଶାଳ ଦେଶ ସ୍ୱାଧୀନତା ଲାଭ କରିସାରିଲା ପରେ ଆଉ କାହାରି ସନ୍ଦେହ ରହିବ ନାହିଁ ଯେ ଅହିଂସାତ୍ମକ ଆନ୍ଦୋଳନ ଥିଲା ପଶୁବଳ ବିରୁଦ୍ଧରେ ନୈତିକ ବଳର ହୁଙ୍କାର । ସେଥିପାଇଁ ବୀରକିଶୋର ଲେଖିଥିଲେ—

"ସତ୍ୟର ବିଜୟ ଦେଖ ଯୁଗେ ଯୁଗେ
ହସି ହସି କଷ୍ଟ ସତ୍ୟାଗ୍ରହୀ ଭୋଗେ
ସେ ସତ୍ୟଚରଣେ ପ୍ରାଣ ଢାଳିଦେବି
ଭୂଲି ଆଗ ପଛ ଭାବନା
ଭାଇ ମୋତେ ଆଉ ତୁମେ କହନା ।"

(ରଣଦୁନ୍ଦୁଭି)

"ସଜାଅ ସୈନ୍ୟ" କବିତାରେ କବି ବୀରକିଶୋର ସ୍ୱାଧୀନ ଭାରତର ସ୍ୱପ୍ନ ଦେଖିଛନ୍ତି ଯେଉଁଠାରେ "ଭାଇ ବେକେ ଭାଇ ଛୁରୀ ନ ମାରିବେ" । ସେହି ଦେଶରେ "ମାନବ ନୋହିବେ ମାନବର ଦାସ" । ସେଠାରେ ପ୍ରତିଷ୍ଠିତ ହେବ ପ୍ରେମର ରାଜ୍ୟ । ସେହି ସମାଜରେ କୌଣସି କୁସଂସ୍କାର ଏବଂ ଅଜ୍ଞାନର ଅନ୍ଧକାର ରାଜପଣ କରିବ ନାହିଁ । କୌଣସି କୁଟିଳ ଅତ୍ୟାଚାରୀ ଓ ଶୋଷକମାନଙ୍କୁ ଆଦୌ ବରଦାସ୍ତ କରାଯିବ ନାହିଁ । କେବଳ ସେତିକି ନୁହେଁ, ସେଠାରେ "ସାମ୍ୟବାଦର ନନ୍ଦନ ବନ ଦେବ ପାରିଜାତ ପ୍ରୀତି ।" ଏହା କେବଳ ସମ୍ଭବ ହେବ, ଯେଉଁଦିନ ବ୍ରିଟିଶ କେଶରୀର କେଶରକୁ ଦଳି ସ୍ୱାଧୀନତା ସଂଗ୍ରାମର ସେନାନୀମାନେ ମୃତ୍ୟୁ ସାଥିରେ କ୍ରୀଡ଼ା କରିବାକୁ ଅଗ୍ରସର ହେବେ । ସେଥିପାଇଁ କବିଙ୍କର ରଚିତ ଗୀତ ଗାଇ ଗାଇ ସତ୍ୟାଗ୍ରହୀଗଣ ଇଂରେଜ ସିପାହୀଙ୍କର ଗୁଳିକୁ ମଥା ପତାଇ ଦେଲେ ହସି ହସି—

‘ହୀନସ୍ଥିତି ମୋର ସେହି ଚିନ୍ତା
ବନ୍ଧୁ ସେହି ଚିନ୍ତା,
(ଏ) ସରକାର ଶବଦାହ ହେବ କେବେ
ଦେଖିବି ମୁଁ ତାର ଶେଷ ଚିତା
ବନ୍ଧୁ, ସେହି ଚିନ୍ତା ।”
(ସରକାର ଶବଦାହ ହେବ କେବେ)

ସତ୍ୟାଗ୍ରହ ଆନ୍ଦୋଳନର ପ୍ରଧାନ ସେନାପତି ମହାତ୍ମା ଗାନ୍ଧୀଙ୍କୁ ଇଂରେଜ ସରକାର ଜେଲଖାନାରେ ବନ୍ଦୀ କରି ରଖିଥିଲେ ଆନ୍ଦୋଳନକୁ ଚପାଇ ଦେବାପାଇଁ । ଥରେ ଜନସାଧାରଣଙ୍କର ମନୋବଳ ଭାଙ୍ଗିଗଲେ ଆନ୍ଦୋଳନ ଆପେ ଆପେ ବନ୍ଦ ହୋଇଯିବ । ମାତ୍ର ଏହି ସମୟରେ କବି ବୀରକିଶୋରଙ୍କ କବିତା ଗାନ୍ଧୀଙ୍କର ମୁକ୍ତି ଦାବି କରି ଅନୁରଣିତ ହେଲା—

“କେତେ ଠେଙ୍ଗା ଅଛି କେତେ ବାଡ଼ି ଅଛି
ଫୁଟାଇବି ତାକୁ ଫୁଟାଅ
କେତେ ଗୁଳି ଅଛି କେତେ ତୋପ ଅଛି
ପକାଇବ ତୁମେ ପକାଅ ।”
(ମାନେ ମାନେ ଯିବ ବିଦା ହେବା କଥା)

ବିଦେଶୀ ସରକାରଙ୍କୁ କବି “ଗୁଣ୍ଡା ସରକାର” ବୋଲି ଅଭିହିତ କରିଛନ୍ତି । ସେମାନଙ୍କ ଶାସନରେ ଆଇନକାନୁନ୍‌ର କୌଣସି ମର୍ଯ୍ୟାଦା ନାହିଁ । ଛଳେବଳେ କୌଶଳେ ଅଳ୍ପ କେତେ କଳା ଲୋକଙ୍କୁ ଆୟତ୍ତ କରି ସେମାନେ ଏ ଦେଶରେ ଶୋଷଣ ଚଳାଇଛନ୍ତି । ବାଣିଜ୍ୟ ନାମରେ ଏ ଦେଶର ମହଣ ମହଣ ସୁନା ବିଲାତକୁ ବୁହା ଚାଲିଛି । ଅସହଯୋଗ ଆନ୍ଦୋଳନ ଯୋଗୁ ଇଂରେଜ ସରକାର ଆଜି ରକ୍ତମୁଖା ହୋଇଛନ୍ତି । କଳାସିପାହୀଙ୍କ ହାତରେ ଦମନଲୀଳା ଚଳାଇଛନ୍ତି । ସେହି ଚାକିରିସର୍ବସ୍ୱ ଅନ୍ଧ'ସ୍ତାବକମାନଙ୍କୁ ଉପଲକ୍ଷ୍ୟ କରି ବୀରକିଶୋର ଗାଇ ଉଠିଲେ—

“ତମେ ମାର କେତେ ଲାଠି ମାରିବ
ତମଲାଗି ଆମେ ଜୀବନ ଦେଇଛୁ
(ତମେ) ତମରି ମହତ ସାରିବ ।
ଆମେ ଯେ ଧରିଛୁ ଅହିଂସାର ନୀତି
ପୃଥିବୀ ଜାଣିବ ସବୁ ରଣ ରୀତି
ଭାରତ କାହିଁକି ସହିବ ଜଗତ
ମୁକତି ଏଥିରେ ଲଭିବ ।”
(ମାର କେତେ ଲାଠି ମାରିବ)

ମହାତ୍ମା ଗାନ୍ଧୀ କେବଳ ଭାରତର ସ୍ୱାଧୀନତା ପାଇଁ ଲଢ଼ାଇ କରୁ ନ ଥିଲେ, ପୃଥିବୀରେ ସବୁ ପରାଧୀନ, ଶୋଷିତ, ଲୁଣ୍ଠିତ ଏବଂ ପତିତ ଲୋକଙ୍କ ମୁକ୍ତି ପାଇଁ ଗାନ୍ଧିଜୀ ସତ୍ୟାଗ୍ରହର ଆହ୍ୱାନ ଦେଇଥିଲେ । ଇଂରେଜ ସରକାର ଗାନ୍ଧିଜୀ ଏବଂ କଂଗ୍ରେସ ନେତାମାନଙ୍କୁ ବନ୍ଦୀ କରି ନେଇଗଲେ । କଂଗ୍ରେସ ଆନ୍ଦୋଳନର କେନ୍ଦ୍ରସ୍ଥଳ ସ୍ୱରାଜ୍ୟ ଭବନରେ ତାଲା ପଡ଼ିଗଲା । ଏହା କଣ ସହ୍ୟ କରାଯାଇପାରେ ! ବୀରବାବୁଙ୍କର ଗୀତ ଗାଇ ସତ୍ୟାଗ୍ରହୀମାନେ ଜାତୀୟ ପତାକା ତଳେ ଏକାଠି ହେଲେ—

"ଭାଇ, ମରିବା ତ ହନେ ମରିବା
ଛେଳି ମେଣ୍ଢାପରି ପାଷଣ୍ଡକୁ ଡରି
(ଏଠି) ଘୁଷୁରି ପରି କି ଡରିବା ?
ମରିବା ତ ହନେ ମରିବା ।
ଜାତୀୟ ପତାକା ଜାତିର ଜୀବନ
ତାକୁ ଭାଙ୍ଗି ଚୂରି ଦେଲେ ଅପମାନ
ସ୍ୱରାଜ୍ୟ ଆଶ୍ରମ କଲେ ବେଦଖଲ,
କିପରି ଏହାକୁ ସହିବା ।"

(ମରିବା ତ ହନେ ମରିବା)

ଆଉ ଗୋଟିଏ କବିତା ଲେଖିଲେ ବୀରକିଶୋର ଯାହାକୁ ବୋଲି ସତ୍ୟାଗ୍ରହୀମାନେ ଆଇନ ଅମାନ୍ୟ କରିବାପାଇଁ ଢଳେହେଲେ ପଛଘୁଞ୍ଚା ଦେଇ ନ ଥିଲେ । ସେଇଟି ହେଲା—

ଉନ୍ନତ ହୁଅ ଜାଗ୍ରତ ହୁଅ
ଭାରତ ପୁର ସନ୍ତାନ
ବିଦ୍ରୋହୀ ହୁଅ, ବିଦ୍ରୋହୀ ବୀର
ଭାଙ୍ଗ ପିଶାଚ ଶାସନ ।

× × ×

ଫାଶିକାଠେ ପଛେ ଝୁଲିବା
ଜନନୀ ଶିକୁଳି କାଟିବା
ଠେଙ୍ଗାମାଡ଼ ସହି ତୁଚ୍ଛ କରିବା
କାରାଭୟ କମ୍ବା ବନ୍ଧନ ।

(ଭାଙ୍ଗ ଆଇନ୍‌କାନୁନ୍)

୧୯୩୦ ମସିହାରେ କେହି କଣ ବିଶ୍ୱାସ କରୁଥିଲେ—ପ୍ରବଳ ପ୍ରତାପୀ ଇଂରେଜ ଶାସନର ଅବସାନ ହେବ ବୋଲି ! ସତ୍ୟାଗ୍ରହୀମାନେ ଦାରିଦ୍ର୍ୟ ଓ ଲାଞ୍ଛନାକୁ ପଦେ ପଦେ ବରଣ କରିଛନ୍ତି, ପରିବାର ସୁଖକୁ ଜଳାଞ୍ଜଳି ଦେଇଛନ୍ତି ଏବଂ ଅନବରତ ଗାଇଛନ୍ତି କବି ବୀରକିଶୋରଙ୍କର ସଙ୍ଗୀତ—

"ଲୋଡ଼ା ନାହିଁ ମୋର ସରଗ
ଭୋଗେ ପଛେ ନରକ
ମୋ ଦେଶ ଉଦ୍ଧାର ଲାଗି
ମାଟି ତଳେ ମିଶିବି ମିଶିବି ।"

(ଗ୍ରନ୍ଥିକ ପଥର କଣି)

ଯେଉଁ ଦେଶରେ ପତିତପାବନ ବାନା ଫରଫର ଉଡ଼ୁଛି, ସେହି ଦେଶରେ ଦିନେ ଭଲ ଦଶା ଫେରିବ ଏବଂ ସ୍ୱାଧୀନତା ମିଳିବ ବୋଲି କବି ଆଶାପ୍ରକାଶ କରିଛନ୍ତି ।

**"ରଣଭେରୀ—ଆଗାମୀଯୁଗର ବାର୍ତ୍ତାବହ**

୧୯୩୧ ସାଲରେ ଇଂରେଜ ସରକାର ଆପୋଷ କରିବା ପାଇଁ ବିଲାତରେ ଗୋଲଟେବୁଲ ବୈଠକ ଆହ୍ୱାନ କଲେ । ଏହି ବୈଠକରେ ଭାରତର ବହୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଲୋକେ ପ୍ରତିନିଧିତ୍ୱ କରିଥିଲେ ହେଁ ଏକମାତ୍ର ମହାତ୍ମା ଗାନ୍ଧୀ ଥିଲେ ଭାରତୀୟ ଜନଗଣର ପ୍ରକୃତ ପ୍ରତିନିଧି । ବିଦେଶୀ ରାଜପ୍ରତିନିଧିମାନଙ୍କର ଏ ବିଷୟରେ ସନ୍ଦେହ ନ ଥିଲେ ହେଁ ସେମାନେ ଗାନ୍ଧୀ-ଆନ୍ଦୋଳନକୁ ସ୍ୱୀକୃତି ଦେବାକୁ ଇଚ୍ଛା ନ କରି ଅନ୍ୟମାନଙ୍କୁ ଡାକିଥିଲେ । ତେଣୁ ଗୋଲଟେବୁଲ ବୈଠକର ଆଲୋଚନା ବିଫଳ ହୋଇଯିବା ପରେ ଗାନ୍ଧିଜୀ ବନ୍ଦୀ ହେଲେ ଏବଂ ଦେଶରେ ପୁଣି ଦମନନୀତି ଚାଲିଲା । ଏହି ସମୟରେ ବୀରକିଶୋର ଲେଖିଥିଲେ "ରଣଭେରୀ" କବିତା—"ସାରା ବିଲାତରେ ହାହାକାର ଆମେ ପକାଇଦେବୁ" । କବିଙ୍କ ଭାଷାରେ 'ରଣଭେରୀ' ଓ 'ରଣଦୁନ୍ଦୁଭି' ଲାଗି ମୋ ନାମରେ ମକଦ୍ଦମା ହେଲା ଓ ମୋତେ ଦୁଇ ବର୍ଷ ଜେଲ ଭୋଗିବାକୁ ପଡ଼ିଲା । ବୀରକିଶୋରଙ୍କ କବିତା ସରକାରଙ୍କ ପ୍ରାଣରେ କୋହୁଆ ଭୟ ସୃଷ୍ଟି କରିଥିଲା । ଆଲୋଚ୍ୟ 'ରଣଭେରୀ' ପୁସ୍ତକ ବର୍ଦ୍ଧିତ କଳେବର ଗ୍ରହଣ କରି ୧୯୭୬ ଖ୍ରୀଷ୍ଟାବ୍ଦରେ ତୃତୀୟ ଥର ପାଇଁ ମୁଦ୍ରିତ ହୋଇଅଛି ।

୧୯୩୦ ମସିହାରେ ସ୍ୱାଧୀନତାର ଚିତ୍ର ସ୍ପଷ୍ଟ ହୋଇ ନ ଥିଲା । କିନ୍ତୁ କ୍ରାନ୍ତଦ୍ରଷ୍ଟା କବି ବୀରକିଶୋର ସ୍ୱାଧୀନ ଭାରତରେ ରାଜଡ଼ା ଶାସନ ରହିବ ନାହିଁ ବୋଲି ଜାଣି-ପାରିଥିଲେ । କାରଣ ସେତେବେଳେ ସେମାନେ ଏକ ପ୍ରତିକ୍ରିୟାଶୀଳ ଶକ୍ତି ଭାବରେ ସ୍ୱାଧୀନତାର ପରିପନ୍ଥୀ ହୋଇ ଇଂରେଜ ଶାସନର ସମର୍ଥକ ହୋଇ ଠିଆ ହୋଇଥିଲେ ।

"କ୍ଷେତ୍ର ବିଳାସରେ ମାରନ୍ତି ମଜା
ଆଉ ନ କରିବୁ ତାହାକୁ ରଜା
ରାଜପଦ ଯେତେ ଉଠାଇଦେବୁ
ଉଠାଇଦେବୁ ।"

ସାମାନ୍ୟ କେତେଜଣ ଇଂରେଜ ଆମର କଳାବାଇମାନଙ୍କ ସହଯୋଗରେ ଏତେବଡ଼ ଦେଶକୁ ଶାସନ କରୁଥିଲେ । ଚତୁର୍ଦ୍ଦିଗରେ ଅସହଯୋଗ ଓ ସତ୍ୟାଗ୍ରହ କରି ଏହି ବିଦେଶୀ ଶାସକର ମୁଖା ଖୋଲି ଦିଆଯିବ, ଏମାନେ ହେଉଛନ୍ତି ଧୋବଲି ଠକ । ଗାନ୍ଧିଜୀଙ୍କ ଆନ୍ଦୋଳନ ଯୋଗୁ ପରାଧୀନ ଜାତିର ପ୍ରାଣରେ ନବବଳ, ନବବିଶ୍ୱାସ ଏବଂ ଅପୂର୍ବ ଆତ୍ମପ୍ରତ୍ୟୟ ଜାତ ହୋଇଥିଲା । ତେଣୁ ବିଦେଶୀ ଜିନିଷ ବର୍ଜନ କରି "ସାରି ବିଲାତରେ ହାହାକାର ଆମେ ପକାଇଦେବୁ । ଗୋରା ଶାସନକୁ ଏପାରି ସେପାରି ନଚାଇ ଦେବୁ" ବୋଲି କବି ରଣଭେରୀ କବିତାରେ ଆହ୍ୱାନ ଦେଇଥିଲେ ।

ଭାରତମାତା କୋଳରେ ବହୁ ଭାଷା, ଜାତି, ଧର୍ମ ଓ ଗୋଷ୍ଠୀର ଲୋକ ବାସ କରନ୍ତି । ଭାରତର ସ୍ୱରାଜ୍ୟ ନାନା ଭୌଗୋଳିକ ପରିବେଶ ମଧ୍ୟରେ ବିଭିନ୍ନ ସଂସ୍କାର ଓ ଚଳଣି ପ୍ରତିଷ୍ଠା ଅର୍ଜନ କରିଥିଲେହେଁ ଆମେ ସମସ୍ତେ ଗୋଟିଏ ମାତାର ସନ୍ତାନ ଏବଂ ଗୋଟିଏ ମୂଳ ସଂସ୍କୃତିର ଉତ୍ତରାଧିକାରୀ । ବେଳେବେଳେ ଆତ୍ମପ୍ରତ୍ୟୟ ଏବଂ ପ୍ରକୃତ ବୁଝାମଣା ଅଭାବରେ ଆମ ମଧ୍ୟରେ ବିଭେଦ ସୃଷ୍ଟି ହୁଏ ଏବଂ ଆମେ ନିଜକୁ ସ୍ୱତନ୍ତ୍ର ମନେ କରି ମାଆର ସମ୍ମାନ ରକ୍ଷାକରିବା ପାଇଁ ପଶ୍ଚାତ୍‌ପଦ ହେଉ । ବରଂ ଆମର ଘର କଳି ଯୋଗୁଁ ଯୁଗେ ଯୁଗେ ବିଦେଶୀମାନେ ସୁଯୋଗ ଗ୍ରହଣ କରି ଆମର ଦେଶମାତାଙ୍କୁ ଲାଞ୍ଛିତ ଓ ଅପମାନିତ କରିଅଛନ୍ତି । ସେଥିପାଇଁ କବି ବୀରକିଶୋର 'ଖଦୀ ତ ପ୍ରାଣଦେବତା' କବିତାରେ ଦେଶବାସୀଙ୍କୁ ଚେତାଇ ଦେଇଥିଲେ—

"ହିନ୍ଦୁ ମୁସଲମାନ ଇଶାଇ ଜଇନ
ବଉଦ୍ଧ ପାରସୀ ଶିଖ ଆଦି ଜନ
ସବୁରି ପରାଣେ ନବ ଭାବ ଆଣେ
ସୃଜଇ ମାନବ ପ୍ରୀତି ଏକତା
ଖଦୀ ତ ଦେଶର ପ୍ରାଣ ଦେବତା ।"

(ରଣଭେରୀ)

ସେହିପରି "ଆମେ ହିନ୍ଦୁ, ଆମେ ମୁସଲମାନ" କବିତାରେ କବି ଲେଖିଥିଲେ ଧର୍ମ ଆମର ଅଲଗା ହୋଇପାରେ, ପୋଷାକ ଓ ଚଳଣିରେ କିଛି ପାର୍ଥକ୍ୟ ରହିପାରେ, ମାତ୍ର ଆମେ ସମସ୍ତେ ଭାରତମାତାର କୋଳରେ ଜନ୍ମଗ୍ରହଣ କରିଛେ, ପ୍ରତିପାଳିତ ହେଉଛେ ଏବଂ

ଏହିଠାରେ ଶେଷନିଃଶ୍ୱାସ ତ୍ୟାଗ କରି ଏ ଦେଶର ମାଟିରେ ମିଶିଯିବା । ତେଣୁ ଦେଶ ଜନନୀର ଇଜ୍ଜତ ରକ୍ଷାପାଇଁ ଆମେ ଅଗ୍ରସର ହେବା ନାହିଁ କି ?

"ଆମେ କୋଟି କୋଟି ଭାରତବାସୀ
ଘୃଷ୍ଟ କାରିଗର ମୂଲିଆ ଚାଷୀ
ଆମେ ଅଟୁ ଶିଖ, ବୌଦ୍ଧ, ପାର୍ଶୀ
ଆମେରେ ଜଇନ, ଖିରସ୍ତାନ
ଆମେ ହିନ୍ଦୁ, ଆମେ ମୁସଲମାନ ।
ମସ୍‌ଜିଦ୍ ଯେଉଁ ମାଟିରେ ଗଢ଼ା
ଗିରିଜା ମନ୍ଦିର ତହିଁରେ ଛିଡ଼ା
ଏକା ପାଣି ଏକା ପବନେ ବଞ୍ଚୁ
ଏକା ରକ୍ତରେ ଗଢ଼ା ଆମରି ଜାନ୍
ଆମେ ହିନ୍ଦୁ, ଆମେ ମୁସଲମାନ ।"
× × ×
ନୋହିବୁ କଦାପି ବେଇମାନ
ଆମେ ହିନ୍ଦୁ, ଆମେ ମୁସଲମାନ । (ରଣଭେରୀ)

କେତେଯୁଗ ଧରି ପରାଧୀନ ହୋଇ ରହିବା ଫଳରେ ଭାରତବାସୀ ଅତ୍ୟନ୍ତ ପରମୁଖାପେକ୍ଷୀ ହୋଇପଡ଼ିଥିଲେ । ଆତ୍ମବିଶ୍ୱାସ ଏବଂ ଆତ୍ମମର୍ଯ୍ୟାଦା ହରାଇ ସେମାନେ ଅତ୍ୟନ୍ତ ଗ୍ଲାନିକର ଜୀବନଯାପନ କଲେ । ଅଜ୍ଞାନ ଅନ୍ଧକାରରେ ବୁଡ଼ି ରହି ସେମାନେ ନିଜର ପ୍ରାଚୀନ ସଭ୍ୟତା, ସଂସ୍କୃତି ଏବଂ ସାହିତ୍ୟ ସହିତ ପରିଚିତ ହୋଇପାରୁ ନ ଥିଲେ । ଦାରିଦ୍ର୍ୟ, ଅଶିକ୍ଷା ଏବଂ କୁସଂସ୍କାରର ଘନ ଅନ୍ଧକାର ମଧ୍ୟରେ ସେମାନେ ପଶୁପରି ଜୀବନଯାପନ କରୁଥିଲେ । ସେମାନେ ଯେ ଏକ ଗୌରବମୟ ସଭ୍ୟତା ଓ ଐତିହ୍ୟର ଅଧିକାରୀ, ଏ କଥା ସେମାନେ ଭୁଲି ଯାଇଥିଲେ । ଶାସନ, ବାଣିଜ୍ୟ, ଶିକ୍ଷା ଏବଂ ସାମାଜିକ ପୁନର୍ଗଠନ ପ୍ରଭୃତି କାର୍ଯ୍ୟରେ ସେମାନଙ୍କର ମୌଳିକ ଭାବନା ଲୋପ ପାଇଯାଇଥିଲା । ଏହିପରି ଆତ୍ମବିସ୍ମୃତ ଅବସାଦଗ୍ରସ୍ତ ଜାତିକୁ ଜାଗ୍ରତ କରିବା ପାଇଁ କବି ଆହ୍ୱାନ ଦେଇଛନ୍ତି— ଆମକୁ ନିଜ ଗୋଡ଼ରେ ଠିଆ ହେବାକୁ ହେବ ଏବଂ ନିଜର ଦାବି ଓ ସମ୍ମାନ ହାସଲ କରିବା ପାଇଁ ଯୋଗ୍ୟତା ହାସଲ କରିବାକୁ ପଡ଼ିବ ।

"ଆମ ନିଜ କଥା ନିଜେ ନ ଭାବିଲେ
ପର ଆମ ପାଇଁ ଭାବିବେ ନାହିଁ,
ଆମ ଯୋଗ୍ୟପଣ ଦେଖିଲେ ସଂସାରେ
ସମସ୍ତେ ଡାକିବେ ଆସ ହେ ଭାଇ ।

ସ୍ବଇବା, ଜାପାନ, ଜର୍ମାନୀ, ରୁଷିଆ
ଶେଠ ଆମେରିକା, ତୁର୍କି, ଅଷ୍ଟ୍ରେଲିଆ
କେହି ଆମ ପଛେ ହେବେ ନାହିଁ ଠିଆ
ବନ୍ଧୁଏ ରକତ ତଳେ ପକାଇ
ପର ଆମ ପାଇଁ ଭାବବେ ନାହିଁ ।''
(ପର ଆମ ପାଇଁ ଭାବବେ ନାହିଁ)

ଏ ଦେଶର ତରୁଣମାନଙ୍କୁ କବି ଯେତେବେଳେ ସ୍ୱାଧୀନତା ସମରରୂପକ ଯଜ୍ଞରେ ଝାସ ଦେବାପାଇଁ ଡାକରା ଦେଇଛନ୍ତି, ସେତେବେଳେ ସେ ବାନରସେନାମାନଙ୍କୁ ଚେତାଇ ଦେଇଛନ୍ତି ସେହି ଗହନ ତପସ୍ୟାର କଥା । ଦେଶପାଇଁ ଯେଉଁମାନେ ଆଗୁସାର ହେବେ, ସେମାନେ ଜାଣିବା ଉଚିତ ଯେ ସେହି ପଥ ଅତ୍ୟନ୍ତ ବିପଦ ପରିପୂର୍ଣ୍ଣ । ଅସୀମ ସାହସ, ନିଷ୍ଠା ଏବଂ ଆତ୍ମତ୍ୟାଗର ନିଷ୍ପତ୍ତି ଗ୍ରହଣ ନ କଲେ କେହି ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଶତ୍ରୁର ମୁକାବିଲା କରିପାରିବ ନାହିଁ । ଯେଉଁମାନେ ଏହି ପଥରେ ଅଗ୍ରସର ହୋଇଛନ୍ତି, ସେମାନଙ୍କୁ ସାମୟିକ ଫୁଲମାଳ ଓ ପ୍ରଶଂସା ହୁଏତ ମିଳିଛି, ମାତ୍ର ପରମୁହୂର୍ତ୍ତରେ ହାତକଡ଼ି ଓ ଲାଠି ପ୍ରହାର ମଧ୍ୟ ହୋଇଛି ସେମାନଙ୍କ ଜୀବନର ଅଳଙ୍କାର । ଆଖି ଆଗରେ ନିଜର ପରିବାର ଅସୀମ ଦୁଃଖ ଯାତନାରେ ଜର୍ଜରିତ ହୋଇଛନ୍ତି । କବିଙ୍କ ଭାଷାରେ ଏ ଦୁଃଖ ହେଉଛି—''ମରଣରୁ ବଳି ପରାଣ ବ୍ୟଥା'' । ସେଥିପାଇଁ 'ଦେଶପ୍ରୀତି' ମନାସି ଯେଉଁମାନେ ଅଗ୍ରସର ହୁଅନ୍ତି, ସେମାନଙ୍କ ପାଇଁ—

ପଦ, ଗଉରବ, କେବେ ସମ୍ମାନ
କେବେ ଅନଶନେ ଖୋଜେ ମରଣ;
ଟିକି ଟିକି ହୋଇ ମରିବାକୁ ହୁଏ
ଜାଳି ଦେଇ ନିଜେ ନିଜର ଚିତା
ବଡ଼ ଗହନ କଥା ।
(ବଡ଼ ଗହନ କଥା)

ଅସହଯୋଗ ଆନ୍ଦୋଳନ କାଳରେ ଗାନ୍ଧିଜୀ କେବଳ ରାଜନୈତିକ ସ୍ୱାଧୀନତା ପାଇଁ ଲଢ଼ାଇ କରୁ ନ ଥିଲେ । କେବଳ ଭାରତର ସ୍ୱାଧୀନତା ମଧ୍ୟ ତାଙ୍କର ଏକମାତ୍ର ଧ୍ୟେୟ ନ ଥିଲା । ସେ ଇଚ୍ଛାକରୁଥିଲେ, ପୃଥିବୀରେ ଯେତେ ପରାଧୀନ ଏବଂ ଶୋଷିତ ଜାତି ଅଛନ୍ତି, ସମସ୍ତେ ମୁକ୍ତିର ଅମୃତ ଆସ୍ୱାଦନ କରନ୍ତୁ । ସେହିପରି ସେ ମଧ୍ୟ ଇଚ୍ଛା କରୁଥିଲେ, ପ୍ରତ୍ୟେକ ଜାତି ଅର୍ଥନୀତି, ସମାଜ ଏବଂ ସଂସ୍କୃତି କ୍ଷେତ୍ରରେ ମଧ୍ୟ ସ୍ୱାବଲମ୍ବୀ ହେଉ । ପରମୁଖାପେକ୍ଷୀ ଓ ପରନିର୍ଭରଶୀଳ ସମାଜର ଦୁର୍ଗତି ଅପରିସୀମ । ସେହି କାରଣରୁ ଗାନ୍ଧିଜୀ ଏ ଦେଶର କୁଟୀର ଶିଳ୍ପକୁ ଉତ୍ସାହିତ କରିଥିଲେ ଏବଂ ବିଦେଶୀ ବସ୍ତ୍ର

ବର୍ଜନ କରିବା ପାଇଁ ଆନ୍ଦୋଳନ ଚଳାଇଥିଲେ । ସେହି ଭାବନାକୁ ରୂପାୟିତ କରି କବି ବୀରକିଶୋର ଲେଖିଲେ—

"ଛୁଅଁନା ଛୁଅଁନା ବିଦେଶୀ ବସନ
ଭାଇ ମୁଣ୍ଡା ନାହିଁ ସେହି ପାପକୁ
ଅମୃତ ହାଣ୍ଡିରେ ବିଷ ମିଶା ନାହିଁ
ଦୁଧ ପିଆ ନାହିଁ ନାଗ ସାପକୁ ।
× × ×
ଆପଣା ଭାଇଙ୍କି ଭିକାରି କରି ତୁ
କେଉଁ ପୋଷ ନାହିଁ ଦୂର ଠକକୁ
ଜାତି ମହାସଭା ଗୁପ୍ତ ରକ୍ତ ପିଇ
ଆଜି କାଟ ନାହିଁ ନିଜ ବେକକୁ ।"
(ଛୁଅଁନା ବିଦେଶୀ ବସନ)

"ଖଦୀ ତ ଦେଶର ପ୍ରାଣ ଦେବତା
ପାଇଛୁ ମୋ ଦେଶ ଖଦୀର ସନ୍ଦେଶ
ବୁଝିଛୁ ଖଦୀର ମରମ କଥା
ଖଦୀ ତ ଦେଶର ପ୍ରାଣ ଦେବତା ।"
(ଖଦୀ ତ ଦେଶର ପ୍ରାଣଦେବତା)

ପରିଶେଷରେ ସେ ସତ୍ୟାଗ୍ରହୀ ସୈନିକମାନଙ୍କୁ ମାତୃଭୂମି ପାଇଁ ଚରମ ତ୍ୟାଗ-ବରଣ କରିବାପାଇଁ ଆହ୍ୱାନ ଦେଇଥିଲେ । ସ୍ୱର୍ଗଭୂମିକୁ ଅସୁରମାନଙ୍କ କବଳରୁ ରକ୍ଷା କରିବା ପାଇଁ ଥରେ ଦଧୀଚି ମହର୍ଷି ନିଜର ଅସ୍ଥି ଦାନକରିଥିଲେ । ଆଜି ଜନ୍ମଭୂମିର ସ୍ୱାଧୀନତା ହାସଲ ପାଇଁ ସେହି ପ୍ରକାର ତ୍ୟାଗ ଆବଶ୍ୟକ । ତେଣୁ କବି ଲେଖିଲେ—

"ତମେ କେତେଜଣ
ଜୀବନକୁ ପାଣି
ଛଡ଼ାଇ ନ ଦେଲେ ଚଳିବ କି ?
× × ×
ତମର ରକ୍ତରେ ଜାତୀୟ ପତାକା
ରଙ୍ଗାଇବ ଯେବେ ସହି ଶତ ଧକ୍କା
ମାନବ ଜାତିକି ବଞ୍ଚାଇ ରଖିବ
ପୃଥିବୀରେ ଯିବ ନାଆଁ ରଖି ।"
(ଯବନିକା)

## "ବିଦ୍ରୋହୀ ବୀଣା"ର ଝଙ୍କାର

"ଏ ବହିର ଇତିକଥା"ରେ କବି ବୀରକିଶୋର ଲେଖିଥିଲେ—"୧୯୩୦ ମସିହାର ଲବଣ ସତ୍ୟାଗ୍ରହବେଳେ 'ବିଦ୍ରୋହୀ ବୀଣା' ଲେଖିଥିଲି । ସେଥିରେ ଏ ବହିର ପ୍ରଥମ ସାତଟି ସଙ୍ଗୀତ ଥିଲା । ଏହା ଛପା ହୋଇଥିଲା କଟକର ସତ୍ୟବାଦୀ ପ୍ରେସରେ । ମୂଲ୍ୟ ଥିଲା ଏକ ଅଣା ମାତ୍ର । ବହିଟି ଛପାଇବା ପାଇଁ ଋଣେଇଶି ଟଙ୍କା ଲାଗିଥିଲା । ଏ ଟଙ୍କା ଦେଇଥିଲେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ସରକାର ମୋ ନାମରେ ମକଦ୍ଦମା କଲେ । ଶେଷରେ ମୁଁ ବର୍ଷେ ଜେଲଦଣ୍ଡ ଭୋଗିଲି ।"

୧୯୩୦ ମସିହାର ପ୍ରଥମ ସଂସ୍କରଣରେ ଯେଉଁ କବିତାଗୁଡ଼ିକ ଥିଲା ତାହା ହେଲା—ବିଦ୍ରୋହୀ ବୀଣା, ବିଜୟ ବାଦ୍ୟ, ଆସ ମୋ ଶିବିରେ, କମାଣ ପରିଏ କଲମ ଧର, ଡାକେ ବନ୍ଧୁକ, ଦଣ୍ଡଆ ଦଖଲ କରିଯିବ କିଏ ଆସ, ଶେଷ କଥା । ୧୯୩୮ ମସିହାରେ ଦ୍ୱିତୀୟ ସଂସ୍କରଣ ଏବଂ ୧୯୭୬ ମସିହାରେ ତୃତୀୟ ସଂସ୍କରଣ ପ୍ରକାଶ କରିଥିଲେ 'ମୋ ଦେଶ ପ୍ରକାଶନୀ' । ଏହି ଶେଷୋକ୍ତ ପ୍ରକାଶନାରେ କବି ଆଉ ଏଗାରଟି ପରବର୍ତ୍ତୀ କାଳର କବିତା ଯୋଡ଼ିଥିଲେ ।

'ବିଦ୍ରୋହୀ ବୀଣା'ର କବି ବୀରକିଶୋର ହୁଏତ ତରୁଣ ବୟସରେ ବଙ୍ଗଳା ସାହିତ୍ୟର ଅଗ୍ନିଯୁଗର ବିଦ୍ରୋହୀ କବି କାଜିନଜରୁଲ୍ ଇସଲାମ୍‌ଙ୍କ ଦ୍ୱାରା ପ୍ରଭାବିତ ହୋଇଥାଇପାରନ୍ତି । ନଜରୁଲଙ୍କର ଗୋଟିଏ କବିତା ବହି 'ଅଗ୍ନିବୀଣା' ହୁଏତ ସେ ପାଠ କରିଥିବେ । ତେଣୁ ନିଜର କବିତାଗୁଡ଼ିକୁ ସଂକଳନ କରି ସେ 'ବିଦ୍ରୋହୀବୀଣା' ନାମ ଦେଇଥିବେ । ହୁଏତ ସେ ନିଜର ଅଜାଣତରେ ନଜରୁଲ୍‌ଙ୍କ ଦ୍ୱାରା ପ୍ରଭାବିତ ହୋଇଥାଇ ପାରନ୍ତି । ନଜରୁଲ୍‌ଙ୍କ 'ଅଗ୍ନିବୀଣା'ର ଏକ ପ୍ରଭାବଶାଳୀ କବିତା ହେଉଛି 'ବିଦ୍ରୋହୀ' । ଉଦାହରଣ ସ୍ୱରୂପ ତହିଁରୁ କେତୋଟି ପଦ ଏଠାରେ ଉଦ୍ଧାର କରାଯାଉଛି ।

'ବଲବୀର
ଆମି ଚିର-ଉନ୍ନତ ଶିର
ଆମି ଚିର ଦୁର୍ଦମ, ଦୁର୍ବିନୀତ, ନୃଶଂସ
ମହା-ପ୍ରଲୟେର ଆମି ନଟରାଜ, ଆମି ସାଇକ୍ଲୋନ, ଆମି ଧ୍ୱଂସ
ଆମି ମହାଭୟ, ଆମି ଅଭିଶାପ ପୃଥ୍ୱିର !
ଆମି ଦୁର୍ବାର,
ଆମି ଭେଙ୍ଗେ କରି ସବ ଚୂର-ମାର !
ଆମି ଅନିୟମ, ଉଚ୍ଛୃଙ୍ଖଲ,
ଆମି ଦଲେ ଯାଇ ଯତ ବନ୍ଧନ, ଯତ ନିୟମ-କାନୁନ ଶୃଙ୍ଖଲ !

ଆମି ମାନିନାକୋ କୋନୋ ଆଇନ,
ଆମି ଭରା-ତରୀ କରି ଭରା-ଡୁବି,
ଆମି ଟର୍ପେଡୋ, ଆମି ଭୀମ ଭାସମାନ ମାଇନ୍
ଆମି ଧୂର୍ଜଟୀ, ଆମି ଏଲୋକେଶେ ଝଡ଼ ଅକାଲ ବୈଶାଖୀର
ଆମି ବିଦ୍ରୋହୀ, ଆମି ବିଦ୍ରୋହୀ-ସୂତ ବିଶ୍ୱ-ବିଧାତୃର !
× × ×
ଆମି ବିଦ୍ରୋହୀ ଭୃଗୁ, ଭଗବାନ ବୁକେ ଏଁକେଦେବୋ ପଦଚିହ୍ନ
ଆମି ଖେୟାଲି ବିଧିର ବକ୍ଷ କରିବ ଭିନ୍ନ !
ଆମି ଚିର-ବିଦ୍ରୋହୀ ବୀର
ଆମି ବିଶ୍ୱ ଛାଡ଼ାୟେ ଉଠିୟାଛି ଏକା ଚିର-ଉନ୍ନତ ଶିର !

କବି ନଜରୁଲ ମଧ୍ୟ ଅନ୍ୟ ଏକ କବିତାରେ ଦେଶପାଇଁ ଚରମ ତ୍ୟାଗ ସ୍ୱୀକାର-କରିବାକୁ ଆହ୍ୱାନ ଜଣାଇ ଗାଇଥିଲେ—

"କାଣ୍ଡାରୀ ତବ ସମ୍ମୁଖେ
ଏଇ ପଲାସୀର ପ୍ରାନ୍ତର
ବାଙ୍ଗାଲୀର ଖୁନେ ଲାଲ୍ ହଲ
ଯେଥା କ୍ଲାଇବେର୍ ଖଞ୍ଜର
ଏଇ ଗଙ୍ଗାଏ ଡୁବିଆଛେ ହାୟ
ଭାରତେର ଦିବାକର
ଉଦିବେ ସେ ରବି ଆମାଦେର ଖୁନେ
ରାଙ୍ଗାଇ ପୁନର୍ବାର ।"

'ବିଦ୍ରୋହୀ ବୀଣା'ର କବି ବୀରକିଶୋର ତାଙ୍କର ସେହି ଶୀର୍ଷକ କବିତାରେ ବିଦ୍ରୋହ ଘୋଷଣା କରିଛନ୍ତି । ଗାନ୍ଧିଜୀଙ୍କ ଆହ୍ୱାନରେ ସତ୍ୟାଗ୍ରହୀମାନେ ଏହି ଗୀତ ଗାଇ ଇଂରେଜ ସିପାହୀଙ୍କ ସଙ୍ଗୀନ ଆଗରେ ଛାତି ପଡାଇ ଦେଉଥିଲେ । ହସି ହସି କେତେ ଦୁଃଖ ଓ ନିର୍ଯାତନା ସହୁଥିଲେ, ତାର ତୁଳନା ନାହିଁ । ସେ ଅତ୍ୟାଚାରୀ ଶାସକମାନଙ୍କ ବିରୁଦ୍ଧରେ କବିଙ୍କର ବିଦ୍ରୋହୀ ବାଣୀ ହେଲା—

ମୁଁ ଯେ ବିଦ୍ରୋହୀ ଚିର ବିଦ୍ରୋହୀ
ଚିର ରଣଜୟୀ ରଣ ବିଦ୍ରୋହୀ
ରଣମାନବ, ରଣଦାନବ, ରଣରକ୍ତ ମୁଖରୁ
ମୁକ୍ତ କରିବି ମୋର ମହୀ ।

ବିଷ କଣ୍ଟକ ସବୁ ଚୂରିବ
ତୋପ ବନ୍ଧୁକ ଯେତେ ହରିବ
ରଣ ଅସ୍ତ୍ର ଯେତେ ଭାଙ୍ଗିଭୁଙ୍ଗି ଦେଇ
ମୁଁ ତ ଗଢ଼ିବ ଲଙ୍ଗଳ ମଇ ।
× × ×
ଯୁଗ ଅତ୍ୟାଚାର ମୁଁ ଦଳିବ
ଶତ ଶାନ୍ତି ପତାକା ତୋଳିବ
ଅନନ୍ତ ଆସନ ଟଳମଳ ହେବ
ନଷ୍ଟେ ହୋଇବ ପ୍ରଳୟ-ଦେଷ୍ଟ" ।
(ବିଦ୍ରୋହୀ ବୀଣା)

ମରଣଶୀଳ ସଂସାରରେ ବୁଦ୍ଧିଜୀବୀ ମନୁଷ୍ୟ କଳ୍ପନା କରିଛି ଏକ ପରଲୋକର, ଯେଉଁଠାରେ ଜନ୍ମ ନାହିଁ, ମୃତ୍ୟୁ ନାହିଁ, ଶୋକ ନାହିଁ ଏବଂ ଦୁଃଖ ମଧ୍ୟ ନାହିଁ । ତେଣୁ ଇହ ସଂସାରରୁ ପଳାଇବା ପାଇଁ ସେ କାମନା କରେ ସ୍ୱର୍ଗଭୂମିର ଐଶ୍ୱର୍ଯ୍ୟ । ତେଣୁ ଈଶ୍ୱରଙ୍କ ଚରଣ ତଳେ ସେ ଅବିରତ ପ୍ରାର୍ଥନା କରେ ମୁକ୍ତିଲାଭ କରିବାପାଇଁ ସ୍ୱର୍ଗୀୟ ବିଭୂତି ଉଦ୍ଦେଶ୍ୟରେ । ମାତ୍ର ଏପରି ପ୍ରାର୍ଥନା ଅତ୍ୟନ୍ତ ବ୍ୟକ୍ତିନିଷ୍ଠ ଏବଂ ସ୍ୱାର୍ଥସର୍ବସ୍ୱ । ଏହି ଓଡ଼ିଶା ମାଟିରେ ସେଦିନ ଜଣେ କବି ଭୀମଭୋଇ ଅତ୍ୟନ୍ତ ବିକଳ ହୋଇ ଅଲେଖ ନିରଞ୍ଜନଙ୍କୁ ପ୍ରାର୍ଥନା କରିଥିଲେ—

"ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।"

ଠିକ୍ ସେହି ସମୟରେ ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କର ନୋବେଲ ପୁରସ୍କାର-ପ୍ରାପ୍ତ କାବ୍ୟଗ୍ରନ୍ଥ 'ଗୀତାଞ୍ଜଳି'ର ପ୍ରଥମ କବିତାରେ ବିଶ୍ୱସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରିଥିଲେ—

'ଆମାରେ ନା ଯେନ କରି ପ୍ରଚାର
ଆମାର ଆପନ କାଜେ—
ତୋମାରି ଇଚ୍ଛା କରୋ ହେ ପୂର୍ଣ୍ଣ
ଆମାର ଜୀବନ ମାଝେ ।
ଯାଚି ହେ ତୋମାର ଚରମ ଶାନ୍ତି
ପରାଣେ ତୋମାରି ପରମ କାନ୍ତି
ଆମାରେ ଆଡ଼ାଲ କରିୟା ଦାଁଡ଼ାଓ
ହୃଦୟ ପଦ୍ମଦଲେ,

ସକଳ ଅହଂକାର ହେ ଆମାର
ଡୁବାଓ ଚୋଖେର ଜଲେ ।'

ଭକ୍ତକବି ରବୀନ୍ଦ୍ରନାଥ ସମ୍ପୂର୍ଣ୍ଣଭାବରେ ଈଶ୍ୱରଙ୍କ ଇଚ୍ଛାରେ ବିଜନଯୁକ୍ତହେବା ପାଇଁ ଆତ୍ମସମର୍ପଣ କରିଛନ୍ତି । କିନ୍ତୁ କବି ବୀରକିଶୋର ଏ କ୍ଷେତ୍ରରେ ଏକ ମହାନ ବ୍ୟତିକ୍ରମ । ସେ ଦୁର୍ବଳ ସଂସାରୀ ମନୁଷ୍ୟ ପରି ମୁକ୍ତି କାମନା କରିନାହାନ୍ତି । ଅଥବା ଦେଶ ପାଇଁ କାମ କରିବାର ଅନ୍ତରାଳରେ କୌଣସି ଯଶ ଅଥବା ଐଶ୍ୱର୍ଯ୍ୟ ପ୍ରାପ୍ତି ମଧ୍ୟ ତାଙ୍କର ଉଦ୍ଦେଶ୍ୟ ନାହିଁ । ନିଃସ୍ୱାର୍ଥପର ଭାବରେ ଦେଶସେବାର ବ୍ରତ ତାଙ୍କର ସଫଳ ହେଉ ବୋଲି ସେ ଅଭିଳାଷ ପୋଷଣ କରି କହିଛନ୍ତି—'ଦେହର ମୁକତି ଲୋଡ଼ା ନାହିଁ ମୋର ଦେଶର ମୁକତି ବାସନା' । ସେଦିନ ବିବେକାନନ୍ଦ ଭାରତବାସୀଙ୍କୁ ବଜ୍ରଗମ୍ଭୀର ସ୍ୱରରେ ସ୍ମରଣ କରାଇ ଦେଇଥିଲେ ଯେ ମାନବକୁ ଅବହେଳା, ଅଣହେଳା କରି ମନ୍ଦିର, ମସଜିଦ୍, ଚର୍ଚ୍ଚରେ ପ୍ରାର୍ଥନା କଲେ କୌଣସି ଆଧ୍ୟାତ୍ମିକ ବିଭୂତିର ଅଧିକାରୀ ମନୁଷ୍ୟ ହୋଇପାରିବ ନାହିଁ । ସେ ପ୍ରଥମେ ସେବାଭାବନା ଜରିଆରେ ଈଶ୍ୱରଙ୍କୁ ପ୍ରାର୍ଥନା-କରିବା ଆବଶ୍ୟକ ବୋଲି କହିଥିଲେ ।

'ମାନବ ସେବା ହିଁ ମାଧବ ସେବା' । ସତେ ଯେପରି ସେହି ଆଦର୍ଶର ଅନୁରୋଧରେ ବୀରକିଶୋର ଲେଖିଲେ—

"ଜୀବ ସେବାରେ ମୋ ଦିନ କଟିଯାଉ
ଶିବମସ୍ତୁ ହେଉ ଭାବନା ।"

ମଣିଷ ମଧ୍ୟରେ ଦେବତାର ଉପସ୍ଥିତି ଉପଲବ୍ଧି କରି ଜାତୀୟ କବି ଲେଖିଛନ୍ତି—

"ମାନବ ପରାଣେ ଦେଖେ ମୁଁ ଦେବତା
ମାନବ ଚରଣେ ଲୋଟୁ ମୋର ମଥା
ବନଫୁଲ ପରି ଝରିପଡ଼େ ଏଠି
ବନ୍ଧୁବାନ୍ଧବଙ୍କ ଅଜଣା ।"

(ବନଫୁଲ ପରି ଝରିପଡ଼େ)

ଥରେ ଦେଶପ୍ରେମ ଏବଂ ମାନବସେବା ମନ୍ତ୍ରରେ ଦୀକ୍ଷିତ ହୋଇଗଲେ ପରେ, ସ୍ୱାଧୀନତା ସଂଗ୍ରାମୀର ଭୟ କାହାକୁ, ସଙ୍କୋଚ କାହାପାଇଁ ? ଯେ ସ୍ୱାର୍ଥତ୍ୟାଗୀ, ତାକୁ ସଂସାରର କୌଣସି ଆଧିପତ୍ୟ ବିଚଳିତ କରିପାରିବ ନାହିଁ । ତେଣୁ ବୀରକିଶୋର ଲେଖିଲେ—

"ମରଣକୁ ଯେବେ ବରଣକରିବା
ଡର ଅଛି ତେବେ କାହାକୁ ?
ଆସୁ ଯେବେ ବଡ଼ ବିପଦ ବତାସ
ତୁଟାଇବା ନାହିଁ ମନର ସାହସ
ନିଜ ପାଦେ ନିଜେ ଠିଆ ହେବା ଆମେ
ସାହା କରି ନିଜ ବାହାକୁ ।"
( ଡର ଅଛି ତେବେ କାହାକୁ )

ଇଂରେଜ ଶାସକମାନେ ଥିଲେ ଅତ୍ୟନ୍ତ କୂଟନୀତିସମ୍ପନ୍ନ । ସେମାନେ ସାଂପ୍ରଦାୟିକ ବିଭେଦ, ପଦପଦବୀ ଏବଂ କିଛି ସରକାରୀ କ୍ଷମତା ବିତରଣ କରି ଆମର ସ୍ୱାଧୀନତା ସଂଗ୍ରାମକୁ ଦୁର୍ବଳ କରିଦେବା ପାଇଁ ଅନବରତ ଉଦ୍ୟମ ଚଳାଇଥିଲେ । ସେହି ସମୟର କଥା । ଦ୍ୱିତୀୟ ଗୋଲଟେବୁଲ୍ ବୈଠକ ସମୟରେ ଗାନ୍ଧୀ ଓ ଭାରତର ବଡ଼ଲାଟଙ୍କ ମଧ୍ୟରେ ଗୋଟିଏ ବୁଝାମଣା ହେଲା ୧୯୩୧ ମସିହା ମାର୍ଚ୍ଚ ପାଞ୍ଚ ତାରିଖରେ । ଏହା ଗାନ୍ଧୀ-ଇରୱିନ୍ ଚୁକ୍ତି ନାମରେ ବିଖ୍ୟାତ । କବି ବୀରକିଶୋର ଇଂରେଜ ଶାସକମାନଙ୍କର ଚାଲବାଜି ଓ କୂଟନୀତି କଥା ସ୍ମରଣ କରାଇଦେବା ପାଇଁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଲେଖିଲେ ସଦା ଜାଗ୍ରତ ରହିବାପାଇଁ ।

"ଆଉ ଫେରିନାହିଁ, ଯୁଦ୍ଧ ସରିନାହିଁ
ଆସ ମୋ ଶିବିରେ ଆସ ଭାଇ !
ହିମାଚଳ ଶିରେ ଶବଦ ଶୁଭଇ, ଡର ନାହିଁ ଅଛି ଡେରି ନାହିଁ ।
× × ×
ଭକତ ଯେ ଅଛ ଦେବୀ ପୂଜା କର
ଭକତ ମନ୍ଦାର ତାଳି ଦେଇ
ତରୁଣ କେ ଅଛ ମରଣକୁ ଦଳି
ଦେବତା ପରିଏ ଉଠ ଚେଇଁ ।"
(ଆସ ମୋ ଶିବିରେ)

ଭାରତରେ ସେତେବେଳେ ସ୍ୱଦେଶୀ ଆନ୍ଦୋଳନ ବିଶେଷ ପ୍ରାଧାନ୍ୟ ଲାଭ କରିନଥିଲା । ସମାଜବାଦୀ ଆନ୍ଦୋଳନ ଯୁଗରେ ହିଁ ସ୍ୱଦେଶୀର ଦାବି ପ୍ରତି ଅଧିକ ସଚେତନତା ପ୍ରକାଶିତ ହୋଇଥିଲା । କ୍ରାନ୍ତଦ୍ରଷ୍ଟା କବି ବୀରକିଶୋର ସବୁଠି ସ୍ୱଦେଶୀର ଜୟଗାନ କରିଛନ୍ତି ଏବଂ ତାହାର ସ୍ୱାର୍ଥ ହାସଲ ନହେଲେ ଏ ଦେଶର ସ୍ୱାଧୀନତା ବିଳମ୍ବିତ ହୋଇପାରିବ ବୋଲି ଆଶଙ୍କା ପ୍ରକାଶ କରିଛନ୍ତି । ତେଣୁ କବି ଲେଖିଛନ୍ତି—

"କୃଷୀ କାରିଗର ପ୍ରାଣ ରକ୍ଷା କର
ଆଜ ଫୁଲ ପାଣି ସିଞ୍ଚିଦେଇ
ଅଚିରେ ଧରଣୀ ସରଗ ସାଜିବ
କଳି ଘୁଞ୍ଚିଯିବ ବଳି ପାଇ ।"
(ଆସ ମୋ ଗୀତିରେ)

"ଭାରତର କୃଷୀ ଭାରତ ମୂଳଆ
ଗଢ଼ିଛୁ ଆମର ଏହି ମାନ
ଭାରତର ପାଣି ଭାରତ ପବନ
ଦେଇଛି ଆମର ଜୀବ ଦାନ ।"
(ଆମେ ଭାରତୀୟ ଭାଗ୍ୟବାନ)

ବୀରକିଶୋର ଥିଲେ ତାଙ୍କର ସଙ୍ଗୀତ ଓ ପଦ୍ୟ ଜରିଆରେ ଗାନ୍ଧୀଦର୍ଶନର ପରମ ପ୍ରବକ୍ତା । ବହୁ କବିତାରେ ସେ ଗାନ୍ଧୀଙ୍କୁ ମହାପୁରୁଷ ଏବଂ ଯୋଗଜନ୍ମା ବ୍ୟକ୍ତି ବୋଲି ଚିତ୍ରଣ କରିଯାଇଛନ୍ତି । ତାଙ୍କର ଭାଷାରେ

"ଯୁଗ ଅବତାର ଆସିଛୁ ଏ ଗାନ୍ଧୀ
ପ୍ରେମଡୋରେ ଦେବ ଜଗତକୁ ବାନ୍ଧି ।"

ଗାନ୍ଧିଜୀ ୧୯୨୧ ସାଲରୁ ୧୯୩୮ ସାଲ ମଧ୍ୟରେ ବାରମ୍ବାର ଓଡ଼ିଶା ଭ୍ରମଣରେ ଆସିଛନ୍ତି ଏବଂ ଏଠାର ଦାରିଦ୍ର୍ୟ ଦୁଃଖ ଦେଖି ବିଚଳିତ ହୋଇପଡ଼ିଛନ୍ତି । ୧୯୨୫ ମସିହାରେ ଗାନ୍ଧିଜୀ ଆସିଥିଲେ ଉତ୍କଳପ୍ରାଣ ମି. ଦାସଙ୍କ ନିମନ୍ତ୍ରଣକ୍ରମେ 'ଉତ୍କଳଟାନେରୀ' ଶିଳ୍ପ ଉଦ୍ୟୋଗକୁ ପରିଦର୍ଶନ କରିବାପାଇଁ । ଏକ ସାଧାରଣ ସଭାରେ ୨୦ ତାରିଖ ଅଗଷ୍ଟ ୧୯୨୫ ସାଲରେ ଭାଷଣ ପ୍ରସଙ୍ଗରେ ଗାନ୍ଧିଜୀ କହିଲେ—

"Orissa is the poorest province in India and this can easily be removed if everyone uses charakha". ୧୯୩୪ ସାଲରେ ପଞ୍ଚମ ଥର ପାଇଁ ଗାନ୍ଧିଜୀ ଓଡ଼ିଶା ଭ୍ରମଣରେ ଆସିଥିଲେ । ଗାନ୍ଧିଜୀଙ୍କର ଏହି ପଞ୍ଚମ ଥର ଓଡ଼ିଶା ଆଗମନର ଏକ ଐତିହାସିକ ଗୁରୁତ୍ୱ ରହିଛି । ଆକୁମାରୀ ହିମାଚଳ ସମଗ୍ର ଭାରତ ବର୍ଷରେ ଛୁଆଁ- ଅଛୁଆଁ ଭେଦଭାବ ବିରୁଦ୍ଧରେ ଜନଜାଗରଣ ସୃଷ୍ଟି କରିବା ପାଇଁ ସେ ଓଡ଼ିଶାରୁ ହରିଜନ ପଦଯାତ୍ରା ଆରମ୍ଭ କରିଥିଲେ । ବୀରକିଶୋର ଲେଖିଲେ ପ୍ରଭୁ ଜଗନ୍ନାଥଙ୍କୁ ଅଭିଯୋଗ କରି—

"ଯାହାଙ୍କ ସେବାରେ ଖଟି ଦିବା ରାତି
ଜଳାଇଦେଉଛୁ ଏ ଜୀବନ ବତୀ
ଆମ ରାଇ ଦେଖି ତାଙ୍କ ନାହିଁ ଭୟ
ଏହା, କେଉଁ ବେଦନୀତି ବୁଝିବା ।
× × ×
ଆମଠାରେ ଯେବେ ନାହିଁ ତୋର ଲୋଭ
ଦେହ ଧରି କାହିଁ ରହିବା ଅଭାବ ?
କୃପାନିଧି ନାମ ସଂସାର ବୁଡ଼ାଇ
ନିଶ୍ଚେ ବାରିନିଧି ଜଳେ ଝାସିବା ।
କହୁଛନ୍ତି କେତେ ଗାନ୍ଧୀ ତା'ର ଲୋକ
ଆସିଛୁ ହାଲିବ ସାରା ପୃଥ୍ୱୀ ଦୁଃଖ
କଥା ଯେବେ ସତ ନେଇ ଗାନ୍ଧୀ ମତ
ଚାଲ, ମୁକତି ମଣ୍ଡପେ ବସିବା ।"
(ଅଭିବ ଯାଜୀ)

ଦେଶ ପାଇଁ କବି ଥିଲେ ପାଗଳ । ପାଠ ଛାଡ଼ିଲେ, ସାଂସାରିକ ଐଶ୍ୱର୍ଯ୍ୟ ଏବଂ ପାରିବାରିକ ସ୍ନେହ, ଶ୍ରଦ୍ଧା ଓ ସୁଖକୁ ଜଳାଞ୍ଜଳି ଦେଲେ । ଶେଷରେ ନିନ୍ଦା, ଅପମାନ ଏବଂ କଷଣ ହେଲା ତାଙ୍କ ଜୀବନର ଭୂଷଣ । ଦେଶମାତା ପାଇଁ ଅଣ୍ଟା ଭିଡ଼ି ବାହାରିବାର ପୁରସ୍କାର ହେଲା ଜେଲ ପାଚେରୀ ଭିତରେ ଆବଦ୍ଧ ହୋଇ ରହିବା । କିନ୍ତୁ ଏସବୁ ଦୁର୍ଗତି ମଧ୍ୟରେ ସେଇ ପ୍ରିୟ ଜନ୍ମଭୂମିକୁ ସବୁବେଳେ ସେ ଝୁରି ହେଉଥିଲେ । ତାଙ୍କ ପାଇଁ ଇନ୍ଦ୍ର-ପଦ ମଧ୍ୟ ତୁଚ୍ଛ ବୋଲି ଜଣାପଡ଼ୁଥିଲା । ପ୍ରିୟ ଜନ୍ମଭୂମିରେ ସାମାନ୍ୟ ଦୁବ ଗଛଟିଏ ହେବାର ଗୌରବ ସେ କାମନା କରୁଥିଲେ ।

"ଜନମେ ଜନମେ ତୋ ପରି ଜନନୀ
ଲଭି ଦେଖେ ମୁହିଁ ଏ ଚିରୁ ଅବନୀ
ଲୋଡ଼ା ନାହିଁ ଆନ ଦେଶ, ଇନ୍ଦ୍ର ପଦ
ବାସନା ତୋ କୋଳେ ଦୁବ ହେବ ।"
(ନୟନେ ନାଚେ ତୋ ଚିତ୍ରୁ ଛବି)

ତେବେ କବିମାନଙ୍କ ଉଦ୍ଦେଶ୍ୟରେ କବି ବୀରକିଶୋରଙ୍କର ଚେତାବନୀ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ପରାଧୀନତା ସଙ୍କଟପଣ କରୁଥାଏ ଅତ୍ୟନ୍ତ କଠୋର ଅନୁଶାସନ ଜାହିର କରି । ପ୍ରତିଷ୍ଠିତ ବିଦେଶୀ ସରକାର ବିରୁଦ୍ଧରେ ଅଧିକାଂଶ ନାଗରିକ ଚିନ୍ତା କରିବାକୁ ମଧ୍ୟ ସାହସ କରୁ ନ ଥାନ୍ତି । କବି ଓ ଲେଖକ କେବଳ ମାନସିକ ବିଳାସ ପାଇଁ ଲେଖନୀ

ଧାରଣ କରୁଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ସେମାନଙ୍କ ଲେଖାରେ ସାମାଜିକ ଜୀବନର କିଛି ବାହ୍ୟ ରୂପ ହୁଏତ ପ୍ରତିଫଳିତ ହୋଇପାରୁଥିଲା, ମାତ୍ର ତହିଁରେ ଜାତିର ଆତ୍ମା ରୂପାୟିତ ହୋଇପାରୁ ନ ଥିଲା । ତା'ର ଆଶା, ଆକାଂକ୍ଷା, ଅଭିଳାଷା ଓ ସଂଗ୍ରାମର କାହାଣୀ ପ୍ରାୟତଃ ସାହିତ୍ୟର କାନ୍‌ଭାସ୍‌ରେ ଥିଲା ସ୍ୱପ୍ନ ପ୍ରାୟ । ଯୁଗେ ଯୁଗେ ସାହିତ୍ୟ ହୋଇଛି ବିପ୍ଳବର ସୁନାକାଠି । ଜାତିର ପ୍ରାଣ ସ୍ପନ୍ଦନ ସାହିତ୍ୟ ମାଧ୍ୟମରେ ସ୍ଫୁଟି ଉଠେ । ତହିଁରୁ ସମାଜ ପାଏ ପ୍ରେରଣା ଓ ଅଗ୍ରସର ହୁଏ ନୂଆ ନୂଆ କାର୍ଯ୍ୟପନ୍ଥା ଗ୍ରହଣ କରିବା ପାଇଁ । ଏହିପରି ଏକ ଅବକ୍ଷୟୀ ସ୍ଥାନମନ୍ୟ ଯୁଗର ଲେଖକମାନଙ୍କୁ ବିପ୍ଳବୀ ବୀରକିଶୋର ସ୍ମରଣ କରାଇ ଦେଇଥିଲେ ଯେ ସେମାନଙ୍କର ଲେଖନୀ ଜାଗ୍ରତ ନ ହେଲେ ଦେଶ-ଜନନୀର ଦୁଃଖ ଅପହରଣ ହେବ ନାହିଁ । ଏହା ଲେଖକ ଓ କବିକୁଳ ପାଇଁ ଏକ ନୈତିକ ଦାୟିତ୍ୱ । ତେଣୁ ବୀରକିଶୋରଙ୍କ ପ୍ରାର୍ଥନା ହେଲା—

"କମାଣ ପରିଏ କଲମ ଧର
କବି, ବାଜେ କବିତା ବନ୍ଦ କର,
କମାଣ ପରିଏ କଲମ ଧର ।
ଅରେ ବଜା ନବ ସମର ଭେରୀ
ତରୁଣ ଯେତେ ଯେଇ ସଙ୍କେତେ
ଆସନ୍ତୁ ତୋତେ ହର୍ଷେ ଘେରି ।
ଗୋଲପି ଅଧର ଯାଉଛି ଶୁଖି
କବିତା ଲେଖିବୁ କାହାକୁ ଦେଖି
ଚନ୍ଦ୍ର ବଦନେ ନାହିଁରେ ହସ,
ଶରତ ରାସ ଦେଖିବ କିଏ ବୁଝିବ କିଏ ବସନ୍ତ ରସ ।"

ଯେଉଁ କବିମାନେ ଆଦର୍ଶର ପ୍ରାଣ ପ୍ରତିଷ୍ଠା ପାଇଁ ପୌରାଣିକ ଆଖ୍ୟାୟିକାଗୁଡ଼ିକୁ ରୂପଦାନ କରି ଆତ୍ମସନ୍ତୋଷ ଲଭି କରୁଥିଲେ, ସେମାନଙ୍କୁ ବୀରକିଶୋର କହିଛନ୍ତି, ହା ଅନ୍ନ ହା ଅନ୍ନ, କଷ୍ଟ ଉତ୍ପୀଡ଼ିତ ଦେଶରେ ମାନସିକ ବଳ ଆସିବ କେଉଁଠୁ ? ଯେଉଁ ସମାଜର ସାମାନ୍ୟ ଜାତୀୟ ଚରିତ୍ର ଓ ଦେଶପ୍ରେମର ଅଭାବ, ସେଠାରେ ଆଦର୍ଶର ଜୟଗାନ କରି ଲଭ କଣ ? ତେଣୁ ସେ ଲେଖିଲେ—

"ଗୀତା ଗୀତାଞ୍ଜଳି ପଢ଼ୁଛ କିଏ
କ୍ଷୁଧିତ କଙ୍କାଳ କମ୍ପାଇ ଦିଏ ।
ପକ୍ଷୀ ହୃଦୟ ଜଳଇ ନିତି
କଙ୍କାଳ ବୁକେ ନେଇବ କିଏ ଅଭିସାରିକାର ଗୁପ୍ତ ପ୍ରୀତି ?"

ସେହି କବିତାରେ କବି ବୀରକିଶୋର ଇଂରେଜ ଶାସନର ମୁଖା ଖୋଲି ଦେଇଛନ୍ତି । ବଣିକ ଇଂରେଜ ଜାତି ବୃହଦାକାହାଜରେ ଏ ଦେଶର ଧନ ଦଉଲତ ତାଙ୍କ ଦେଶକୁ ବୋହିନେଇ ଯାଉଛନ୍ତି । ଅଥଚ ଏଠାରେ କୋଟି କୋଟି ଲୋକ ଓଳିଏ ଖାଇ ଖଣ୍ଡିଏ ପିନ୍ଧିବାକୁ ପାଆନ୍ତି ନାହିଁ । ମଥା ଗୁଞ୍ଜିବା ପାଇଁ ବାର ଓଳିତଳ ଚୁଅନ୍ତି । ଆତ୍ମସମ୍ମାନ ହରାଇ ଏକ ବିକଳ ଜାତିରେ ସେମାନେ ପରିଣତ ହୋଇଯାଇଛନ୍ତି । ଏହି ପରିପ୍ରେକ୍ଷୀରେ ବରଂ

"ନାଦୀରସାହାର ଲୁଣ୍ଠନ ଭଲ
ମରହଟ୍ଟା ପଛକେ କରୁ କଲବଲ
ଏ ରକ୍ତ ଶୋଷଣ ଶାସନ ନୀତି
ହାଡ଼ଠାରୁ ଜୀବ ସବୁ ଶୋଷିନିଏ ପୂତନା ପରିଏ
ଦେଖାଏ ପ୍ରୀତି ।
ତେଣୁ ହେ ମୋର ଦେଶର କବି !!
କବି, ବାଜେ କବିତା ବନ୍ଦ କର
କମାଣ ପରିଏ କଲମ ଧର ।"

## ଇତିହାସର ଅବିସ୍ମରଣୀୟ ସ୍ୱପ୍ନ—"ସମର ଯୁଗର ଅମର ସଙ୍ଗୀତ"

ସ୍ୱାଧୀନତା ଯୁଦ୍ଧ ଶେଷ ହୋଇଗଲା । ଦେଶ ହେଲା ସ୍ୱାଧୀନ । ଦୀର୍ଘକାଳର ପରାଧୀନତାର ଅନ୍ଧକାର ଅପସାରିତ ହୋଇଗଲା । କେତେ ଆଶା ଉଦ୍ଦୀପନା ଗ୍ରହଣ କରି ସ୍ୱାଧୀନ ଦେଶର ନାଗରିକମାନେ କର୍ମକ୍ଷେତ୍ରରେ ଅଗ୍ରସର ହେଲେ । ଯେଉଁମାନେ ସଂଗ୍ରାମୀ ଥିଲେ, ସତ୍ୟାଗ୍ରହ କରି କେତେ ଲାଞ୍ଛନା ଓ ଦୁଃଖ ବରଣ କରିଥିଲେ, ସେମାନଙ୍କ ମଧ୍ୟରୁ ଅନେକ ସରକାରୀ କ୍ଷମତା ଓ ସମ୍ମାନ ଲାଭ କରି ଜୀବନକୁ ଉପଭୋଗ କଲେ । ତ୍ୟାଗ ବଦଳରେ ଭୋଗ ହେଲା ଜୀବନର ଆଦର୍ଶ । ଏଥିପାଇଁ ଯେ କୌଣସି ଅନୈତିକ ପନ୍ଥାର ଆଶ୍ରୟ ଗ୍ରହଣ କରିବା ପାଇଁ ସେମାନେ କୁଣ୍ଠିତ ହେଲେନାହିଁ । ବୋଧହୁଏ ଏହି ଅବସରରେ ବୀରକିଶୋରଙ୍କ ଲେଖନୀ ଚଳଚଞ୍ଚଳ ହୋଇଉଠିଲା । ସେ ନିଜେ ପରିଣତ ବୟସରେ ପଦାର୍ପଣ କରିସାରିଥିଲେ । ତଥାପି ଅଙ୍ଗୀକାରବଦ୍ଧ ହୋଇ ଲେଖନୀ ଧାରଣ କରିଥିଲେ, ଜେଲ ବରଣ କରିଥିଲେ, ଦୁଃଖ କରିଥିଲେ । ତାହା ଏତେ ଚଞ୍ଚଳ ଅପାସୋର ହୋଇ-ଯିବ କିପରି ? ସତ୍ୟାଗ୍ରହୀ ଜୀବନର ସେହି ତ୍ୟାଗପୂତ ଜୀବନକୁ ସ୍ମରଣ କରାଇ ଦେଶବାସୀ ଓ ନେତାମାନଙ୍କୁ ଉଦ୍‌ବୋଧନ ଦେବାପାଇଁ ସେ ଲେଖିଲେ '୯୨' ଖ୍ରୀଷ୍ଟାବ୍ଦରେ "ସମର ଯୁଗର ଅମର ସଙ୍ଗୀତ" । ସମଗ୍ର ସ୍ୱାଧୀନତା ସଂଗ୍ରାମର ଇତିହାସ କବିତା ରୂପରେ ଏହି ଗ୍ରନ୍ଥରେ ସ୍ଥାନ ପାଇଥିଲା । ସ୍ୱାଧୀନତାର ପଚିଶବର୍ଷ ପରେ ଏହି କବିତା ପୁସ୍ତକ ପ୍ରକାଶ କରି କବି ବୀରକିଶୋର ତାର ମୁଖବନ୍ଧରେ ଲେଖିଥିଲେ—

"ମୁଁ କବିତାକୁ ଭଲପାଏ, କବିତା ମତେ ଭଲପାଏ । ଋଷ୍ୟଶୃଙ୍ଗ ମୁନିଙ୍କୁ ଜରତା ଛଡ଼ାଇ ଆଣିଲା ପରି ସ୍ୱାଧୀନତା ମୋତେ ଭୁଲାଇ ଆଣିଥିଲା । ମୁଁ ସ୍ୱାଧୀନତାକୁ ମର୍ମେ ମର୍ମେ ଅନୁଭବ କରିଥିଲି ଏବଂ ସ୍ୱାଧୀନତା ସଂଗ୍ରାମର ପବିତ୍ର ବହ୍ନିରେ ଝାସ ଦେଇଥିଲି । ଏହି କବିତା ଲାଗି ଥରକୁ ଥର ଜେଲ ଗଲି, ତଥାପି କବିତା ଆଜି ମୋ ଭିତରେ ଯେଉଁ ନିବିଡ଼ ସମ୍ପର୍କ ସେ ତୁଟିଲା ନାହିଁ, ବରଂ ଅଧିକ ଶକ୍ତ ହୋଇଛି ।"

କବି ଆଜୀବନ କବିତା ଲେଖି ଚାଲିଥିଲେ । ସ୍ୱାଧୀନତା ଲାଭର ଅବ୍ୟବହିତ ପରେ ସ୍ୱାଧୀନତା ଯୁଦ୍ଧର ପ୍ରଧାନ ସେନାପତି ଗାନ୍ଧିଜୀଙ୍କୁ ହତ୍ୟା କରାଗଲା । କ୍ଷମତା ରାଜନୀତିରେ ଅନ୍ଧ ହୋଇ ନେତା, କର୍ମୀ ଓ ଜନସାଧାରଣ ଗାନ୍ଧୀଜୀଙ୍କୁ ଭୁଲିଯିବାକୁ ବସିଲେ । ପରାଧୀନ ଭାରତର ସ୍ୱାଧୀନତା ସଂଗ୍ରାମୀମାନେ ସ୍ୱାଧୀନ ଭାରତବର୍ଷରେ ନିଜର ତ୍ୟାଗପୂତ ଜୀବନକୁ ବିସ୍ମୃତ ହୋଇ ଭୋଗୀ ହୋଇଗଲେ । କ୍ଷମତା ଓ ବିଳାସ ମଧ୍ୟରେ ସେମାନେ ଜନଜୀବନରୁ ଦୂରେଇଗଲେ । ଏ ଦେଶର ଅଧିକାଂଶ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ଅତ୍ୟନ୍ତ ବିକଳ-ବିଧୁର ଜୀବନଯାପନ କରୁଥିଲେ । କିନ୍ତୁ ସ୍ୱାଧୀନ ଭାରତରେ ସେମାନଙ୍କ ଅବସ୍ଥାର ବିଶେଷ ପରିବର୍ତ୍ତନ ହେଲା ନାହିଁ । ଦେଶରେ ବିଭିନ୍ନ ଯୋଜନା ଜରିଆରେ ଯେଉଁ ଶିଳ୍ପବିକାଶ କରାଗଲା, ତହିଁରେ ଉପର ଶ୍ରେଣୀର ମୁଷ୍ଟିମେୟ ଲୋକ ଅଧିକ ସମୃଦ୍ଧ ହେଲେ ଏବଂ ତଳ ଶ୍ରେଣୀ ଲୋକମାନଙ୍କର ଅର୍ଥନୈତିକ ଅବସ୍ଥାର ବିଶେଷ ପରିବର୍ତ୍ତନ ହେଲାନାହିଁ । କବି ବୀରକିଶୋର ସ୍ୱାଧୀନ ଭାରତବର୍ଷରେ ଏହି ଦୁର୍ଗତି ଲକ୍ଷ୍ୟ କରି ଅତ୍ୟନ୍ତ ବିଚଳିତ ହେବାକୁ ଲାଗିଲେ । '୯୭' ମସିହାରେ ବୀରକିଶୋର ଲେଖିଲେ ଦୀର୍ଘ କବିତା "ଶାନ୍ତିଦୂତ" । ଏହି କବିତାରେ ନିଜର ବ୍ୟକ୍ତିଗତ ଅଭାବ ଏବଂ କାବ୍ୟ-ସାଧନାର ପ୍ରତିକୂଳ ଅବସ୍ଥା ସମ୍ପର୍କରେ ସୂଚାଇ ଦେଇଛନ୍ତି । ସେ ଲେଖିଛନ୍ତି—

ପେଟ ଯେବେ ମୋର ବିପ୍ଳବ କରେ
 ଲେଖିପାରେ ନାହିଁ କବିତା
ବିଷପିଚା ଲାଗେ ଯେତେ ମିଠା କଥା
 କହୁ ଆସି ମୋତେ ବନିତା ।
ନିଆଁ ପେଟରୁ ଉଠିଲେ ଜଳି
ଭାଇ ଭାଇ ସଙ୍ଗେ କରେ କଳି
ବାପ ନ ଚାହେଁ ପୁଅର ମୁହଁ
ମା ନ ଦେଖେ ଝିଅର ଲୁହ
ଶୋଷିତ ଶାସକଙ୍କୁ ଦିଏ ନିକାଳି
ମୂଲିଆ ମାଲିକଙ୍କୁ ଦିଏ ହକାଳି ।" (ଶାନ୍ତିଦୂତ)

କବି ନିଜକୁ ସମାଜ ଜୀବନ ସହିତ ସାମିଲ କରିନେଇଛନ୍ତି । ଅଭାବ ତାଙ୍କର ଚିରସହଚର ଥିଲା । ଅଭାବୀ ଦରିଦ୍ରର ଦୁଃଖ ବୁଝିପାରେ । ତାଙ୍କର ପ୍ରାକ୍‌ସ୍ୱାଧୀନତା କାଳର ଦୁର୍ଦ୍ଦଶା ସମ୍ପର୍କରେ ବର୍ଣ୍ଣନା କରି ବିନୋଦ କାନୁନଗୋ ଲେଖିଥିଲେ ଏଇପରି— "୧୯୨୧ରୁ ଢେଙ୍କାଲ ପର୍ଯ୍ୟନ୍ତ ୫୨ ବର୍ଷରୁ ଅଧିକ କାଳ ସେ ସାଧାରଣ ଜୀବନ କଟାଇଥିଲେ । ସେଥିଭିତରୁ ଛବିଶ ବର୍ଷରୁ କିଛି ଅଧିକ ସମୟ କଟିଗଲା ସ୍ୱାଧୀନତା ସଂଗ୍ରାମ ଭିତରେ । ଏକଥା କହିଲେ ଟିକିଏ ଅତିରଞ୍ଜନ ହେବ ନାହିଁ ଯେ ଏହି ବାବନ ତେପନ ବର୍ଷ କାଳ ସେ ଅଭାବ ଭିତରେ ହିଁ କଟାଇଛନ୍ତି । 'ମୁଁ ଆର୍ଥିକ ଅସୁବିଧାରୁ ଏବେ ମୁକ୍ତ ହୋଇପାରିଛି' ବୋଲି କହିବାର ସୁଯୋଗ ସେ ଥରେ ହେଲେ ପାଇ ନାହାନ୍ତି ।"

ମହାତ୍ମା ଗାନ୍ଧୀଙ୍କ ଭାଷାରେ କହିବାକୁ ଗଲେ ଦାରିଦ୍ର୍ୟକୁ ଯଦି ବରଣକରିବ ତାହା ଭିତରେ ଅପୂର୍ବ ସୌନ୍ଦର୍ଯ୍ୟ ଅଛି ବୋଲି ଅନୁଭବ କରିବ । କିନ୍ତୁ ତୁମ ଇଚ୍ଛା ବିରୁଦ୍ଧରେ ଯଦି ଦାରିଦ୍ର୍ୟ ତୁମ କାନ୍ଧରେ ସବାର ହୋଇଯିବ, ତାହାର ଭୀଷଣ ରୂପ ତୁମ ମନକୁ ଦବାଇଦେବ । ଗାନ୍ଧୀଯୁଗରେ ଯେଉଁମାନେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଉଥିଲେ, ସେମାନେ ଦାରିଦ୍ର୍ୟକୁ ବରଣ ହିଁ କରୁଥିଲେ । ତେଣୁ ଅଭାବ ଅସୁବିଧା ଉପବାସର ଭିନ୍ନ ଅର୍ଥ ଥିଲା ସେମାନଙ୍କ ପାଇଁ । "ଟଙ୍କା ନୁହେଁ ମୋର ଜୀବନର ଲକ୍ଷ୍ୟ, ଶଙ୍କା ନୁହଇ ତ ଯୁବକ ପୋଷାକ" ବୋଲି ଯାହାର କଲମ ଲେଖି ଦେଇପାରୁଥିଲା, ତାକୁ ଆର୍ଥିକ ଅଭାବ କେବେହେଲେ ଡରାଇ ଦେଇ ପାରନ୍ତା ନାହିଁ । × × × ଶେଷ ଜୀବନରେ ଯେଉଁ ଅଭାବ ବା ଦାରିଦ୍ର୍ୟ ଭିତର ଦେଇ ସେ ଚାଲିଲେ ତାହା ନିଜେ ବରଣ କରୁ ନଥିଲେ । ତାଙ୍କ ଉପରେ ତାହା ଲଦି ହୋଇ ରହିଯାଇଥିଲା । ୧୯୨୧ରୁ ତାଙ୍କର ବନ୍ଧୁ ହୋଇ ରହିଆସିଥିବା ହରେକୃଷ୍ଣ ମହତାବ ତାଙ୍କ ମୃତ୍ୟୁପରେ ଟିକିଏ ସୁଦ୍ଧା ଦ୍ୱିଧା ନ ରଖି ଲେଖି ଦେଇଛନ୍ତି—"ଜୀବନରେ ଅସୀମ ଦୁଃଖ ଭୋଗକରିଛ । କାବୁଲିଠାରୁ ଟଙ୍କା ଧାର କରି କେତେ ଯେ ଅପମାନ ପାଇଛ ! ଶରୀରର ରୋଗ ହେବାରୁ କେତେ ଯେ ଯନ୍ତ୍ରଣା ପାଇଛ ! ତଦନୁପାତରେ ତୁମକୁ ସାହିତ୍ୟ ବା ରାଜନୀତି ଶ୍ରଦ୍ଧା କରିନାହିଁ । ଏହା କଣ ତୁମର ଭାଗ୍ୟ ଦୋଷ ?"[୦]

ସ୍ୱାଧୀନତା ଯୁଦ୍ଧର ସୈନିକ ସ୍ୱାଧୀନତାପ୍ରାପ୍ତି ହେଲାପରେ ନୀରବ ହୋଇଯାଇ ନ ଥିଲେ । ସେତେବେଳେ ତାଙ୍କର ବହୁ ସହଯାତ୍ରୀ ସ୍ୱାଧୀନତାର ପ୍ରତିଫଳ ରୂପେ କ୍ଷମତାସୀନ ହୋଇ ଲୋକଜୀବନରୁ ଦୂରେଇଗଲେ ଏବଂ ସମ୍ଭୋଗପୂର୍ଣ୍ଣ ଜୀବନଯାପନ କଲେ; ସେତିକବେଳେ ବୀରକିଶୋର ସ୍ୱପ୍ନ ଦେଖୁଥିଲେ ଏକ ଶୋଷଣମୁକ୍ତ ସମୃଦ୍ଧ ଭାରତ-ବର୍ଷର । ତାଙ୍କର ସ୍ୱପ୍ନର ସ୍ୱରାଜ୍ୟ ଆସିଲେ କେହି ବେକାର ରହିବେ ନାହିଁ, ସମାଜର

---

୦ । ଜାତୀୟ କବି ବୀରକିଶୋର—ବିନୋଦ କାନୁନ୍‌ଗୋ—୧୯୭୭—ପୃ ୧୩୯—୧୪୧,

ସବୁଶ୍ରେଣୀର ଲୋକେ ନିଜର ଶକ୍ତି, ସାମର୍ଥ୍ୟ ଓ ଯୋଗ୍ୟତା ଅନୁସାରେ ସୁଯୋଗ ସୁବିଧା ଲାଭ କରିବେ ଏବଂ ରାଷ୍ଟ୍ର ସମସ୍ତଙ୍କର ସାହାଯ୍ୟ ପାଇଁ କାର୍ଯ୍ୟାମକ ହେବ । ସେହି ସମାଜରେ କୌଣସି ଛୁଆଁ ଅଛୁଆଁ, ସାନ ବଡ଼ ଭେଦଭାବ ରହିବ ନାହିଁ । ଦେଶର ସମ୍ପତ୍ତିର ସମସ୍ତେ ଅଂଶୀଦାର ହେବେ । ତେଣୁ କବି ଲେଖିଥିଲେ—

"କରିବା ବିଧାନ ସବୁ ଧନ ଧାନ
ଦେବା ଉଚିତ ନ୍ୟାୟରେ ବାଣ୍ଟି,
କାହାକୁ ଯୋଗାଇ ଉଚ୍ଚ ସିଂହାସନ
କାହା ବେକକୁ ନ ଦେବା କାଟି ।
ନିକମା ଲୋକକୁ କାମେ ଲଗାଇବା
କେହି ଜଣେ ନ ରହିବେ ବସି,
ହଳ କାମ କରି ଚଳିବ କିଏ ସେ
କିଏ ଚଳିବ କଲମ ଚଷି ।
ଅନ୍ଧ ଛୋଟା ପଙ୍ଗୁ ବୁଢ଼ା ରୋଗିଣାକୁ
କେବେ ଅକାଳେ ନ ଦେବା ମାରି,
ମନୁଷ୍ୟର ସୁଖ ମନୁଷ୍ୟର ଦୁଃଖ
ତାଙ୍କୁ ରଖିବା ମଣିଷ ପରି ।"

(ଶାନ୍ତିଦୂତ)

ପରାଧୀନ ଭାରତବର୍ଷକୁ ନିଜର ଆୟତ୍ତରେ ରଖିବାପାଇଁ ଚତୁର ଇଂରେଜ ଶାସକଗଣ ଏ ଦେଶରେ ସାମ୍ପ୍ରଦାୟିକତାର ବିଷମଞ୍ଜି ପୋତି ଦେଇଗଲେ । ସେମାନେ ବିଚାରିଲେ, ଏହି ଉପାୟରେ ଭାରତୀୟମାନଙ୍କୁ ଚିରଦିନ ପାଇଁ ଦୁର୍ବଳ କରିଦେବା । ତେଣୁ ସେମାନେ ବିଦେଶୀ ଶକ୍ତି ଉପରେ ନିର୍ଭରଶୀଳ ହେବେ । ପାରସ୍ପରିକ ଜାତି, ଗୋଷ୍ଠୀ, ଭାଷା ଓ ଧର୍ମଗତ ସଂଘର୍ଷ ଯୋଗୁ ଐକ୍ୟବଦ୍ଧ ଭାବରେ ଭାରତୀୟଗଣ ଇଂରେଜ ଔପନିବେଶିକ ଶକ୍ତି ବିରୁଦ୍ଧରେ ଫଳପ୍ରସୂ ସଂଗ୍ରାମ କରିପାରିବେ ନାହିଁ । କବି ଏବଂ ସଂଗ୍ରାମୀ ବୀରକିଶୋର ଇଂରେଜ କୂଟନୀତିର ଏହି ତତ୍ତ୍ୱଟି ଉପଲବ୍ଧି କରି ଦେଶବାସୀଙ୍କୁ ବୁଝାଇ ଦେଇଥିଲେ ଲେଖନୀ ସାହାଯ୍ୟରେ—

"ଆମେ ହିନ୍ଦୁ,
ଆମେ ମୁସଲମାନ
ଭାରତ ଆମର ଜନ୍ମ ମାଟି
କବର ଆମର ହିନ୍ଦୁସ୍ଥାନ
ଆମେ ହିନ୍ଦୁ ଆମେ ମୁସଲମାନ ।

ଆମେ କୋଟି କୋଟି ଭାରତବାସୀ
ଖ୍ରୀଷ୍ଟ ଠାକୁର ମୁଲ୍ଲା ଋଷି
ଆମେ ଅଛୁ ଶିଖ ବୌଦ୍ଧ ପାର୍ଶୀ
ଆମେରେ ଜଇନ ଖିରସ୍ତାନ
ଆମେ ହିନ୍ଦୁ ଆମେ ମୁସଲମାନ ।

ମସଜିଦ୍ ଯେଉଁ ମାଟିରେ ଗଢ଼ା
ଗୀରଜା ମନ୍ଦିର ତହିଁରେ ଛିଡ଼ା
ଏକା ପାଣି ଏକା ପବନେ ବଞ୍ଚୁ
ଏକା ରକ୍ତରେ ଗଢ଼ା ଆମର ଜାନ୍
ଆମେ ହିନ୍ଦୁ ଆମେ ମୁସଲମାନ ।

ଆମ ହିମଗିରି ଆମରି ଗଙ୍ଗା
ଯେତେ ଭାଙ୍ଗିଲେ ସେ ନୋହିବ ଭଙ୍ଗା
ସତ୍ୟ ଅହିଂସା ଆମ ଦେବତା
(ଆମେ) ତା'ରି ତେଜରେ ତେଜସ୍ୱାନ୍
ଆମେ ହିନ୍ଦୁ ଆମେ ମୁସଲମାନ ।

ଆମ ଇତିହାସ ଗଢ଼ିଛୁ ଆମେ
ବିଶ୍ୱ ଚମକାଇ ଅମରି ନାମେ
ଡରନାହୁଁ କେବେ ଡରିବୁ ନାହିଁ
ଜୀବନ କରିବୁ କୋରବାନ୍
ଆମେ ହିନ୍ଦୁ ଆମେ ମୁସଲମାନ୍ ।"

ସ୍ୱାଧୀନତା ଆସିଲା ସତ, ହେଲେ ଭେଦଭାବ ଅପସରିଗଲା ନାହିଁ । ସ୍ୱାଧୀନ ଭାରତବର୍ଷରେ ଜାତୀୟ ସଂହତି ଏକ ବିକଟ ସମସ୍ୟାରୂପେ ଦେଖାଦେଲା । ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଅବିଶ୍ୱାସ ଏବଂ ଅବୁଝାମଣା ଦୂର ହେଲା ନାହିଁ । ଏଥିରେ ଦେଶର ପ୍ରଗତି ହେବ କିପରି ? କବି ବୀରକିଶୋର ଆନ୍ତରିକ ଭାବରେ କାମନା କରୁଥିଲେ ଏହିପରି—

"ସବୁ ଭେଦାଭେଦ ସବୁ ବାଦ ଛେଦ
ଆମ ସମାଜରୁ ଦେବା ତଡ଼ି
ଗୋଟିଏ ନୀଡ଼ରେ ଗୋଟିଏ ଭିଟିରେ
ଆମେ ଦୁନିଆକୁ ଦେବା ଗଢ଼ି ।"

(ଶାନ୍ତିଦୂତ)

ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଶାରଦାଶୋଭ ସ୍ୱାଧୀନତା ସମରରେ ଯୋଗ ଦେଇଥିଲେ । ଚରମ ତ୍ୟାଗ ଏବଂ ଅସୁମାର ଦୁଃଖଦୁର୍ଦ୍ଦଶା, ଅପମାନ, ଅପଘଣ ଜୀବନସାରେ ଏକମାତ୍ର ଲକ୍ଷ୍ୟ ଥିଲା ମାତୃଭୂମିର ସ୍ୱାଧୀନତା । ଏହା ଅବଶ୍ୟ ସତ୍ୟ ଯେ ରାଜନୈତିକ ସ୍ୱାଧୀନତା ସହିତ ସାମାଜିକ ଏବଂ ଅର୍ଥନୈତିକ ସ୍ୱାଧୀନତା ହାସଲ ନ ହେଲେ ଦେଶର ଲୋକେ ଆଦୌ ସୁଖୀ ହୋଇପାରିବେ ନାହିଁ । ସ୍ୱାଧୀନ ଭାରତବର୍ଷରେ ରାମରାଜ୍ୟ ଫେରିଆସିବ ବୋଲି ଗାନ୍ଧିଜୀ ସ୍ୱପ୍ନ ଦେଖୁଥିଲେ । ସ୍ୱାଧୀନ ଦେଶର ନାଗରିକ ହିସାବରେ ଏଠାରେ ନାଗରିକମାନେ ସ୍ୱଚ୍ଛନ୍ଦ ଜୀବନଯାପନ କରିପାରିବେ । କୌଣସି ପ୍ରକାର ଶୋଷଣ ଓ ଅତ୍ୟାଚାର ରହିବ ନାହିଁ । କେହି କାହାକୁ ପୀଡ଼ା ଦେବେ ନାହିଁ । ସମସ୍ତେ ସ୍ୱାଧୀନ ଭାବରେ ନିଜର ମୌଳିକ ଅଧିକାର ଭୋଗକରିବେ । କିନ୍ତୁ ଆମର ଦୁର୍ଭାଗ୍ୟ ଯେ ସ୍ୱାଧୀନ ଭାରତବର୍ଷରେ ଏବେ ସୁଦ୍ଧା ସମସ୍ତଙ୍କୁ ଚିକିତ୍ସା ଏବଂ ଶିକ୍ଷାର ସୁବିଧା ମିଳିପାରି ନାହିଁ । ଦେଶର ପ୍ରତ୍ୟେକ ଅଞ୍ଚଳ ସହିତ ଯୋଗାଯୋଗ ସମ୍ପର୍କ ପ୍ରତିଷ୍ଠିତ ହୋଇନାହିଁ । ଦାରିଦ୍ର୍ୟର ସୀମାରେଖାତଳେ ଅଧିକାଂଶ ଜନସାଧାରଣ ଜର୍ଜରିତ ହେଉଅଛନ୍ତି । ପଞ୍ଚବାର୍ଷିକ ଯୋଜନା ଜରିଆରେ ହଜାର ହଜାର କୋଟି ଟଙ୍କା ଦେଶର ଉନ୍ନୟନ ପାଇଁ ବିନିଯୁକ୍ତ ହେଉଥିଲେହେଁ ଦୁର୍ନୀତି ଏବଂ ଜାତୀୟ ଚରିତ୍ରର ଅଭାବଯୋଗୁ ଏହି ବିପୁଳ ପରିମାଣ ଅର୍ଥର ସଦ୍‌ବିନିଯୋଗ ହୋଇପାରିନାହିଁ । ଋଣଭାରରେ ଦେଶ ସତେ ଯେପରି ଭାରାକ୍ରାନ୍ତ ହେବାକୁ ବସିଛି । ସ୍ୱାଧୀନତାପରବର୍ତ୍ତୀ କାଳର ଏହି ଉଦ୍‌ଭୃତ ପରିବେଶ କବିପ୍ରାଣକୁ ଭୟଙ୍କର ଭାବରେ ଆଘାତ ପ୍ରଦାନ କରିବା ସ୍ୱାଭାବିକ । ସେଥିପାଇଁ କବି ଶାରଦାଶୋଭ ନିଜର ପ୍ରତିକ୍ରିୟା ପ୍ରକାଶ କରି ଲେଖିଛନ୍ତି—

"ଆସି ସ୍ୱାଧୀନତା          ଆସିଲା ତ ନାହିଁ
ରାହୁ କେତୁ ପରି ହେଲା ବେଶ,
ଅମୃତ ଆଶାରେ          ଟକ ଟକ ହୋଇ
କଲୁ ମହତ ଆମର ଶେଷ ।
× × ×
ଯୋଜନା ଯୋଜନା          ବାଜଣା ବଜାଇ
ଯାହା ଫଳିଲା ସଭିଙ୍କି ଜଣା
ବାହାରେ ବାହାରେ          ବାରଅଣା ଗଲା
ବାକି ଭାମ ହେଲା ଚାରିଅଣା ।
ମଣିଷ ଏ ଦେଶେ          ଲଙ୍ଗଳା ରହନ୍ତି
ହୋଇ ବଣ ପଶୁଠାରୁ ହୀନ
ଦୁନିଆ ପାଖରୁ          ଅଲଗା ରହିଣ
ଘାତ ଭିତରେ କାଟନ୍ତି ଦିନ ।

ପାଞ୍ଚ ହଜାରିଆ ହାକିମଙ୍କ ପାଇଁ
ଗଢ଼ା ହୁଲଣି ବଖରା ଘର,
ବେତନ ଟଙ୍କିଆ ଅମଲଙ୍କ ପିଲା
ଖଟି ବାରଣ୍ଡାରେ ହରବର ।
× × ×
ଜନତା କିଷଣ ବେପାରୀ ଶୋଷଣ
ଦଳେ ଶୋଷନ୍ତି ଅମର ଲଢୁ,
ଗଣତନ୍ତ୍ରୀ ନାମ ଧରି କେତେଜଣ
ସେ ତ ବେପାରୀଠୁଁ ବଳି ପାଢୁ ।
× × ×
ଶହେ ଲୋକରେ ତ ଅଠସ୍ତରୀ ଜଣ
ଏଠି ନିପଟ ମୂରୁଖ ଗଜ
କେତେ ପୁରୁଷରେ ଉଠିବ ଏ ଦେଶ
ଥରେ ମନେ ମନେ ଭାଇ ହେଜ ।

(ଶାନ୍ତିଦୂତ)

କବି କେବଳ ଆଞ୍ଚଳିକ ଅଥବା ଦେଶ ପ୍ରୀତିରେ ନିଜର ଚିନ୍ତାଧାରାକୁ ସୀମିତ ରଖିନାହାନ୍ତି । ସେ ହୋଇଛନ୍ତି ସମଗ୍ର ମନୁଷ୍ୟ ଜାତିର କବି । ତାଙ୍କର ହୃଦୟକୁ ଅତି ମାର୍ମିକ ଭାବରେ ସ୍ପର୍ଶକରିଛି ବିଶ୍ୱଜନତାର ଦୁଃଖ ଓ ଦୁର୍ଦ୍ଦଶା । ଦ୍ୱିତୀୟ ମହାସମର ପରେ ପୃଥିବୀର ଜନନାୟକଗଣ ଅନୁଭବକଲେ ଯେ ବେଳହୁଁ ଉପାୟ ଚିନ୍ତା କରି ସାବଧାନତା ଅବଲମ୍ବନ ନ କଲେ ଏହି ସୁନ୍ଦର ପୃଥିବୀ ଅଚିରେ ଧ୍ୱଂସ ପ୍ରାପ୍ତ ହେବ । ଲକ୍ଷ ଲକ୍ଷ ବର୍ଷର ମାନବ ସଭ୍ୟତା ଓ ସଂସ୍କୃତି କାଳବକ୍ଷରେ ବିଲୀନ ହୋଇଯିବ କେବଳ ଅହଂକାରୀ ମନୁଷ୍ୟର ଅବିବେକତା ପାଇଁ । ବୁଦ୍ଧିଜୀବୀ ମନୁଷ୍ୟ ବିଜ୍ଞାନର ରହସ୍ୟ ଉଦ୍‌ଘାଟନ କରି ଆଜି ପରମାଣୁ ବୋମା, ଉଦ୍‌ଜାନ ବୋମା, ନିଉଟ୍ରନ ବୋମା, ଅନ୍ତର୍ମହାଦେଶୀୟ କ୍ଷେପଣାସ୍ତ୍ର ପ୍ରଭୃତି ମାରାତ୍ମକ ମାରଣାସ୍ତ୍ରର ଅଧିକାରୀ ହୋଇଅଛି । ଏହାର ପ୍ରୟୋଗ ହେଲେ ମାନବ ଜାତି ଏବଂ ମାନବସଭ୍ୟତା ଧରାପୃଷ୍ଠରୁ ଲୋପ ହୋଇଯିବ । ସେଥିପାଇଁ ମିଳିତ ଜାତିସଙ୍ଘର ପ୍ରତିଷ୍ଠା କରାଗଲା । କବି ବୀରକିଶୋର ସ୍ମରଣ କରାଇଦେଇଛନ୍ତି ଯେ ଆମ ଜାତିର ପିତା ଯେଉଁ ଅହିଂସା ମନ୍ତ୍ର ପ୍ରଚାର କରିଗଲେ, ତାହାହିଁ ହେଉଛି ଜାତିର ସମସ୍ୟାର ସମାଧାନ ପାଇଁ ଏକମାତ୍ର ଉପାୟ । ହିଂସାମାର୍ଗରେ ଗତି କଲେ ତାର ପରିଣତି କିପରି ଭୟାବହ ହେବ, ତାହା କଳନା କରାଯାଇପାରିବ ନାହିଁ । ସେଥିପାଇଁ ଶାନ୍ତିର ଜୟଗାନ କରି କବି ବୀରକିଶୋର ଲେଖିଥିଲେ—

"ଦେଖି ବିଶ୍ୱ ଦଶା ଉଡ଼ିଯାଏ ହଂସା
ନିତି ଗଢ଼ା ଚାଲେ ବିଷ ବୋମା
ଜୀବ ଜଗତକୁ ଜାଳିବା ପାଇଁକି
ରଚି ନାଗାସାକି, ହିରୋସୀମା ।
× × ×
ବିଶ୍ୱ ଭବିଷ୍ୟତ ଭାବୁନାହିଁ ଭାଇ
ତାକୁ କଲଣି କେଉଁଠି ନେଇ
ନିଜ ବଂଶ ତୁମେ ନିଜେ ବୁଡ଼ାଉଛ
ହୋଇ ଅପର କଥାରେ ବାଇ ।"

(ଶାନ୍ତିଦୂତ)

ଏଥିରୁ ଜଣାଯାଉଅଛି ଯେ ବୀରକିଶୋରଙ୍କ କାବ୍ୟ-ସାଧନା କେବଳ ନିର୍ଦ୍ଦିଷ୍ଟ ସମସ୍ୟା ବା ପାଣିପାଗ ମଧ୍ୟରେ ଆବଦ୍ଧ ନ ଥିଲା । ସେ ସଂପୂର୍ଣ୍ଣ ଭାବରେ ଯୁଗଧର୍ମୀ ଆହ୍ୱାନକୁ ଗ୍ରହଣ କରି ଲେଖନୀ ଚାଳନା କରିଥିଲେ ହେଁ ସର୍ବଯୁଗଜୟୀ ସାର୍ବଜନୀନ ମାନବିକ ସଂପ୍ରୀତି, ପ୍ରେମ ଓ ଭ୍ରାତୃତ୍ୱର ପ୍ରତିଷ୍ଠା ପାଇଁ ସ୍ୱପ୍ନ ଦେଖିଥିଲେ । ଏଥିପାଇଁ ସେ ଗାଇଥିଲେ ପତିତ ଓ ପୀଡ଼ିତ ମୁକ୍ତିକାମୀ ମନୁଷ୍ୟର ସଭ୍ୟତା ଓ ସଂସ୍କୃତିର ଜୟଜୟକାର । ସେଠାରେ ଜାତି, ବର୍ଣ୍ଣ, ଧର୍ମ ଓ ଭୌଗୋଳିକ ପରିସୀମା କବିଙ୍କ ଚିନ୍ତାଧାରାକୁ ସଂକୀର୍ଣ୍ଣ କରିଦେଇ ପାରି ନ ଥିଲା । କବି ବୀରକିଶୋର ତେଣୁ ସମଗ୍ର ମାନବ ସମାଜର ନିରାମୟ ଜୀବନ ପାଇଁ ବିକଳ ହୋଇଛନ୍ତି ଏବଂ ସ୍ୱପ୍ନ ଦେଖିଛନ୍ତି ଏକ ଅନାମୟ ଭବିଷ୍ୟତର ।

---

# ସାମାଜିକ ନାଟକ—କବୀର ଛବି

ଆଲୋଚ୍ୟ ନାଟକଟି ଅପ୍ରକାଶିତ । ଅନ୍ୟ କିଛୁ ଅପ୍ରକାଶିତ ଲେଖା ହୁଏତ ଥାଇପାରେ କିମ୍ବା ସ୍ୱକନୈତିକ ଝଡ଼ଝଞ୍ଜା ମଧ୍ୟରେ ନଷ୍ଟ ହୋଇଯାଇଥାଇପାରେ । ତେବେ ବୀରକିଶୋର ମୁଖ୍ୟତଃ କବି ଥିଲେ । ତାଙ୍କ କବିତାର ଅନ୍ତର୍ନିହିତ ସ୍ୱର ଥିଲି ଜାତୀୟତାବାଦ । ନାଟକଟିର କଳାଗତ ମୂଲ୍ୟ ଯାହା ହେଉ ନା କାହିଁକି, ନାଟକ ମଧ୍ୟରେ ଅବତାରଣା କରାଯାଇଥିବା ସଙ୍ଗୀତଗୁଡ଼ିକ ଅତ୍ୟନ୍ତ ଉପଭୋଗ୍ୟ ଏବଂ ମର୍ମସ୍ପର୍ଶୀ ହୋଇଅଛି । ତେଣୁ ବୀରକିଶୋର ଏକାଧାରରେ କବି ଏବଂ ଜଣେ ସାର୍ଥକ ଗୀତିକାର ଥିଲେ । ଏହି ଉଭୟ ଗୁଣର ଅଧିକାଂଶ ଅତ୍ୟନ୍ତ ବିରଳ । ଓଡ଼ିଆ ସାହିତ୍ୟରେ ବହୁ ଶକ୍ତିଶାଳୀ ନାଟ୍ୟକାରଙ୍କର ଆବିର୍ଭାବ ଘଟିଅଛି । ମାତ୍ର ସେମାନେ ନିଜ ନାଟକରେ ସଂଯୋଜନ ପାଇଁ ଗୀତଗୁଡ଼ିକ ନିଜେ ରଚନା କରିନଥାନ୍ତି । ଏଥିପାଇଁ ସେମାନଙ୍କୁ ପ୍ରତିଷ୍ଠିତ ଗୀତିକାରମାନଙ୍କର ଗୀତ ଗ୍ରହଣ କରିବାକୁ ହୋଇଥାଏ । ମାତ୍ର ନାଟ୍ୟକାର କବି ବୀରକିଶୋର ଉକ୍ତ ନାଟକରେ ସଂଯୋଜିତ ଗୀତଗୁଡ଼ିକ ନିଜେ ରଚନା କରିଅଛନ୍ତି । ଏହି କ୍ଷେତ୍ରରେ ବୀରକିଶୋରଙ୍କ ପ୍ରତିଭାକୁ ନାଟ୍ୟକାର କାଳୀଚରଣ ପଟ୍ଟନାୟକଙ୍କ ସହିତ ତୁଳନା କରିବାକୁ ଇଚ୍ଛା ହୋଇଥାଏ । ଏକାଧାରରେ ନାଟ୍ୟକାର ଏବଂ ଗୀତିକାର ଭାବରେ କବି କାଳୀଚରଣ ଜଣେ ସାର୍ଥକ ଶିଳ୍ପୀ ।

ଓଡ଼ିଶାର ପଲ୍ଲୀଜୀବନ ସହିତ କବିଙ୍କର ଥିଲା ନିବିଡ଼ ସମ୍ପର୍କ । ସାଧାରଣ ଖଟିଖିଆ ଜନସାଧାରଣଙ୍କ ସହିତ ସେବାଛଳରେ ସେ ନିବିଡ଼ ସମ୍ପର୍କ ସ୍ଥାପନ କରିଥିଲେ । ଗ୍ରାମର ପ୍ରାକୃତିକ ଦୃଶ୍ୟରେ କବି ଆତ୍ମହରା ହୋଇପଡ଼ୁଥିଲେ । ପଲ୍ଲୀର ନୈସର୍ଗିକ ପ୍ରକୃତି ସୁନ୍ଦରୀ ତାଙ୍କ ପାଇଁ ଥିଲା ପ୍ରାଣବନ୍ତ ବ୍ୟକ୍ତିତ୍ୱ । ସେ କେବଳ ନିଚ୍ଛକ ଭୌଗୋଳିକ ଶୋଭାସମ୍ପଦ ଦେଖୁନଥିଲେ । ତେଣୁ କୁଳୁକୁଳୁ ନାଦ କରି ସ୍ରୋତସ୍ୱିନୀଟିଏ ପ୍ରବାହିତ ହେଉଥିଲାବେଳେ ତାର କୂଳରେ ଦଣ୍ଡାୟମାନ ରହି କବି ଅନୁଭବ କରୁଥିଲେ, ସତେ ଅବା ତଟିନୀ ସୁନ୍ଦରୀ ପ୍ରେମାପ୍ଲୁତ ଆବେଗରେ ଫେଣର-ହାର ଗୁନ୍ଥିବାରେ ଧ୍ୟାନରତ ସିନା ! ସେହି ନଦୀ-ତୁଠରେ ଜଳକୁମ୍ଭ କାଖରେ ଧରି ପଲ୍ଲୀବଧୂର ପଦଚାଳନା କବି ଚକ୍ଷୁରେ ଅପୂର୍ବ ଲାସ୍ୟ ସୃଷ୍ଟି କରିଅଛି । ପୁନଶ୍ଚ ପଲ୍ଲୀସଂସାରର ଶ୍ୟାମାୟିତ ବନଭୂମିରେ ଶାନ୍ତଶୀତଳ ମଧୁର ସମୀରଣର ହିଲ୍ଲୋଳିତ ପ୍ରବାହ କାହାର ମନକୁ ଅବା ଉଚାଟ ନ କରିବ । ସେହିଠାରେ ଗ୍ରାମର ଗୋପବାଳକ ମୁରଲୀ ବଜାଇ ସମଗ୍ର ବନଭୂମିକୁ ଏକ ଯାଦୁକରୀ ସ୍ପର୍ଶରେ ରଞ୍ଜିତ କରି ଦେଇଥାଏ । ଏହିପରି ଏକ ମାଧୁର୍ଯ୍ୟପୂର୍ଣ୍ଣ ଚିତ୍ର ରୂପାୟିତ ହୋଇଛି ନାଟକର ପ୍ରାରମ୍ଭିକ ସଙ୍ଗୀତରେ —

"ସବୁଜ ଉଠେ ସରୋଜ ଫୁଟେ
ଚନ୍ଦ୍ରମା ହସେ କୁସୁମ ଲୁଟେ
ମଧୁ ଲୋଭେ ମଧୁକର ନାଚଇ ଆସି । ୧ ।
କୋକିଳ ଡାକେ ବକୁଳ ଶାଖେ
ତରୁଣ ହୃଦ ତନ୍ତ୍ରୀରେ ଲାଖେ
ତା' କୁନ୍ତଳେ ଦୋଳି ଖେଳେ ସୌରଭରାଶି । ୨ ।
ତଟିନୀବାଳା ପ୍ରେମେ ଉତଲା
ଗୁନ୍ଥେ ସଧୀରେ ଫେନିଲ ମାଳା
କୁମ୍ଭ କାଖେ ଘାଟୁ ଫେରେ ମଦ ଅଳସୀ । ୩ ।
ପଲ୍ଲବ ସାଥେ ପବନ ମାତେ
ଗୋପ ବାଳକେ ମୁରଲୀ ହାତେ
ଚଳି ଚଳି ବନ ପଥେ ଆସନ୍ତି ହସି । ୪ ।

କବି ବୀରକିଶୋର ଥିଲେ ଜାତୀୟ ଆନ୍ଦୋଳନର ପରମପ୍ରିୟ ମାନ୍ତ୍ରିକ । ତାଙ୍କର ଗୀତଗୁଡ଼ିକ ଗାଇ ଗାଇ ବାନରସେନା ହସି ହସି ସାମ୍ରାଜ୍ୟବାଦୀ ଶକ୍ତିର ଲାଠି ଓ ଗୁଳିଗୋଳାର ସମ୍ମୁଖୀନ ହେଉଥିଲେ । ଲହୁଲୁହାଣ ହୋଇ ସୁଦ୍ଧା ସତ୍ୟାଗ୍ରହୀମାନଙ୍କ କଣ୍ଠରେ ପ୍ରତିଧ୍ୱନିତ ହେଉଥିଲା କବିଙ୍କର ପ୍ରାଣସଞ୍ଚାରୀ ସଙ୍ଗୀତ । ଆଲୋଚ୍ୟ ନାଟକରେ ମଧ୍ୟ କବି କେବଳ ସାଙ୍ଗୀତିକତା ସୃଷ୍ଟି କରିବା ପାଇଁ ଗୀତର ସଂଯୋଜନା କରିନାହାନ୍ତି । ସେ ନାଟକୀୟ ଚରିତ୍ର ଜରିଆରେ ଚେଷ୍ଟାକରିଛନ୍ତି ଜାତୀୟ ଆନ୍ଦୋଳନର ମହୀୟସୀ ବାର୍ତ୍ତାକୁ ପ୍ରଚାର କରିବା ପାଇଁ । ଯେତେକାଳ ପର୍ଯ୍ୟନ୍ତ ଆମ ମଧ୍ୟରେ ଭେଦଭାବ ରହିଥିବ, ସ୍ପର୍ଶକାତର ଭାବରେ ଆମେ ସନ୍ତୁଳିତ ହେଉଥିବା, ପରମ୍ପରାଗତ କୁସଂସ୍କାରର ଅନ୍ଧକାର ଆମ୍ଭମାନଙ୍କୁ ଦିଗ୍‌ଭ୍ରାନ୍ତ କରି ରଖିଥିବ, ସେତେକାଳ ପର୍ଯ୍ୟନ୍ତ ଆମେ ସ୍ୱାଧୀନତାର ଆସ୍ୱାଦନ କରିପାରିବାନାହିଁ । ଦୁଃଖୀ, ରଙ୍କୀ, ପତିତ, ଅବହେଳିତମାନଙ୍କ ପାଇଁ କବିପ୍ରାଣ ବିଚଳିତ ହୋଇଛି । "ସମସ୍ତେ ମୋର, ମୁଁ ସମସ୍ତଙ୍କ ପାଇଁ"—ଏହି ବ୍ରତରେ ଦୀକ୍ଷିତ ହେବାପାଇଁ କବି ଜାତୀୟବାହିନୀ ସେବିକା ସନ୍ନ୍ୟାସିନୀ କଣ୍ଠରେ ବୋଲାଇଛନ୍ତି—

"ମିଳାଇ ଦିଅ ହେ, ସବୁରି ସାଥେ
ମୋ ରଙ୍ଗ ହୃଦୟର ରେଶମୀ ଗଣ୍ଠିଟି
ବାନ୍ଧିଦିଅ ନେଇ ସବୁରି ହାତେ ।
ମୋ ହଜିଲା ଗୀତ ତୁମ କଣ୍ଠେ ପାଇ
ମୋ ଉଜୁଡ଼ା ବୀଣାଟି ତମ ହାତେ ବାଇ
ସାରା ଦୁନିଆକୁ ମତାଇ ଦିଅ ହେ
ରବି ଶଶୀ ତାରା ଚନ୍ଦନ ମୋତେ । ୧ ।

ନୀଳ ସାଗରର ଫେନପୁଞ୍ଜଶ୍ରେଣି
ଆସନ୍ତୁ ମୋ ପାଶେ ନାଚି ନାଚି ହସି
ତରଙ୍ଗଦୋଳାରେ ସୁଦୂର ଅନ୍ଧାରେ
ଭାସି ଭାସି ଯାଏ ଆଶା ବୋଇତେ । ୨ ।
କୃଷକ କୁମାରୀ ଲୁହରେ ଭିଜାଇ
ଶ୍ରମିକ ସୁନ୍ଦରୀ ନିଃଶ୍ୱାସେ ସଜାଇ
(ତାଙ୍କ) ଭଙ୍ଗା କୁଡ଼ିଆର କନ୍ଥା କର ମୋତେ
ମିଶିଯାଏ ତାଙ୍କ ଶ୍ୟାମଳ କ୍ଷେତେ । ୩ ।

କବି ବୀରକିଶୋରଙ୍କର ସନ୍ନ୍ୟାସିନୀ କଣ୍ଠରେ ଏହି ଗୀତଟି ଅତ୍ୟନ୍ତ ରସାଳ, ସାଙ୍ଗୀତିକ ଏବଂ ତାତ୍ପର୍ଯ୍ୟପୂର୍ଣ୍ଣ । ପରାଧୀନ ଭାରତବର୍ଷରେ ସାମ୍ରାଜ୍ୟବାଦୀ ବ୍ୟକ୍ତିର ହୀନ ଚକ୍ରାନ୍ତ ଯୋଗୁଁ ସାମାଜିକ ଜୀବନରେ ଭେଦଭାବର ନାନା ପ୍ରାଚୀର ଜନସାଧାରଣଙ୍କୁ ପରସ୍ପରଠାରୁ ପୃଥକ୍ ରଖିଥିଲା । କବି ରାକ୍ଷୀବନ୍ଧନର ସ୍ୱର ଉତ୍ତୋଳନ କରି ସମସ୍ତଙ୍କୁ ଆପଣାର କରିଛନ୍ତି । କବି ଥିଲେ ଜାତୀୟତାବାଦୀ । ତାଙ୍କର ଗୀତରେ ଥିଲା ଅଗ୍ନିର ଝଙ୍କାର । ସେ କାମନା କରିଛନ୍ତି, ତାଙ୍କର ଜାତୀୟ ସଙ୍ଗୀତ ଗାଇ ଜନସାଧାରଣ ବିପ୍ଳବର ବାଣୀ ଘରେ ଘରେ ପହଞ୍ଚାଇଦିଅନ୍ତୁ । କବି ଥିଲେ ରାଜନୈତିକ କର୍ମୀ ଓ ଜନତାଜନାର୍ଦ୍ଦନଙ୍କର ନିଷ୍ଠାପର ସେବକ । ସେମାନଙ୍କର ଦାରିଦ୍ର୍ୟ ଓ ନିପୀଡ଼ିତ ଜୀବନ କବିପ୍ରାଣରେ ଦାରୁଣ ବେଦନାବୋଧ ସୃଷ୍ଟିକରିଛି । ବୀରକିଶୋର ସେମାନଙ୍କ ସହିତ ସମଦୁଃଖୀ ହୋଇଛନ୍ତି ଏବଂ କାମନା କରିଛନ୍ତି ସେହି ଦରିଦ୍ର କୁଟୀରରେ କନ୍ଥା ହୋଇ ସେମାନଙ୍କ ଶରୀର ଓ ମନରେ ଶାନ୍ତି ଓ ସନ୍ତୋଷର ପ୍ରଲେପ ବୋଳିଦେବା ପାଇଁ । ଦରଦୀ କବି ପ୍ରାଣରେ କୃଷକ ସଂସାର ପାଇଁ ମମତା-ସ୍ନିଗ୍ଧ ବ୍ୟାକୁଳତା ପ୍ରକାଶିତ ହୋଇଛି ।

ନାଟକଟିର ଦ୍ୱିତୀୟ ଅଙ୍କ ଷଷ୍ଠ ଦୃଶ୍ୟରେ ନାୟିକା 'ପ୍ରତିମା'ର ମନୋଭାବ ତା'ରି କଣ୍ଠରେ ଗୋଟିଏ ଗୀତରେ ଚମତ୍କାର ଭାବରେ ପ୍ରକାଶିତ ହୋଇଛି । ପ୍ରଥମ ଦର୍ଶନରେ ପ୍ରତିମା ଭଲପାଇ ବସିଛି ସରୋଜକୁ । ନିଜର ପ୍ରିୟସଖୀ ଲବଙ୍ଗର ଧର୍ମଭାଇ ସରୋଜ ସହିତ ଅହେତୁକ ମିଳନ ତାର ମନରାଜ୍ୟରେ ଏପରି ଅଭାବନୀୟ ପରିବର୍ତ୍ତନ ସୃଷ୍ଟି କରିବ ବୋଲି ସେ କଳ୍ପନା କରିପାରି ନ ଥିଲା । କବି ବୀରକିଶୋରଙ୍କର ଲେଖନୀର ଯାଦୁକରୀ ସ୍ପର୍ଶରେ ସେହି ଗୀତଟି ପାଠକ ଓ ଶ୍ରୋତାମାନଙ୍କ ପ୍ରାଣରେ ପୁଲକ ଏବଂ ଭାବାବେଗ ସୃଷ୍ଟି କରିଥାଏ । କବି କାବ୍ୟନାୟିକାର ଗୀତ ଛଳରେ ଏହିପରି ଲେଖିଛନ୍ତି—

"ମୁଁ ତ ଜାଣେନା, ଜାଣେନା କାହିଁକି
ଫୁଲଟି ଫୁଟୁଥିରେ, ହାଇଟଳି ତାରେ
ପହିଲି ଭେଟରେ ଭୂହିଁକି ।

ତା ନୟନ ଶଶୀ ଜୋଛନା ପରଶି
ମୋ ହୃଦ କୁମୁଦ ଉଠିଲା ବିକଶି
ମୋ ଧୈର୍ଯ୍ୟ ପଥର ବନ୍ଧ ଭାଙ୍ଗିଗଲା
ପୀରତି ତରଙ୍ଗ ଧାଇଁକି । ୧ ।
କେଉଁ ଜନମର ସାଥୀ ସେ ମୋହର
ଦୂର ଅତୀତର ପ୍ରିୟ ସହଚର
କେଉଁ ଧୂଳିଘରେ ଧୂଳି ଖେଳୁଥିଲୁ
ଫୁଲ ରସ ମଧୁ ଖାଇକି । ୨ ।
କେଉଁ ତମାଳର ତଳେ ବାଇ ବଂଶୀ
ଆମ୍ବ ବଉଳର ବାସେ ଗଲୁ ଭାସି
କୋଇଲି ସଙ୍ଗରେ କଣ୍ଠ ମିଳାଇଲୁ
ବଉଳ ବନରେ ବୁଲିକି । ୩ ।
କେଉଁ ମାଘମାସ ପାହାନ୍ତା ପହରେ
ପୂଜାଫୁଲ ତୋଳି ଫେରୁ ଫେରୁ ଘରେ
ଦକ୍ଷିଣା ପବନ ବହି ଗୁପତରେ
ଛୁଇଁଗଲା ଆମ ଦୁହିଁକି । ୪ ।
କେଉଁ ଗୃହଶାଳେ ଗୃହ ହୋଇଥିଲୁ
କଳାକଳେବର କହ୍ନାଇ ଶିଖିଲୁ
ଆଜି ଯା କୃପାରୁ ଭେଟାଭେଟି ହେଲୁ
ବନ୍ଦେ ତାଙ୍କୁ କର ଯୋଡ଼ିକି ।୫।"

ଛଳ ଛଳ ବୟସରେ ମନ କିପରି ସ୍ୱପ୍ନାତୁର ଓ ରହସ୍ୟମୟ ହୋଇଉଠେ, ପ୍ରଣୟାନୁଭୂତିର ମଧୁପାନ ଅବସରରେ, ଆଲୋଚ୍ୟ ଗୀତଟିରେ କବି ତାହାର ମାର୍ମିକ ବିଶ୍ଳେଷଣ କରିଅଛନ୍ତି । ବାସ୍ତବିକ ଜରମାପୁଣୀ ଯନ୍ତ୍ର ପିନ୍ଧା ଜରର ଖବର କହିଦେବ, ମନର ପରିଚୟ ଦେବାପାଇଁ ଏପର୍ଯ୍ୟନ୍ତ ମନମାପୁଣୀ ଯନ୍ତ୍ର ଆବିଷ୍କୃତ ହୋଇନାହିଁ ବୋଲି ଲେଖକ ସୂଚାଇଛନ୍ତି । ହୁଏତ ଏହି ଗୀତଟି କେତେକ ପରିମାଣରେ ନାୟିକାର ମନୋଭାବକୁ ରୂପାୟିତ କରିଥାଏ ମାତ୍ର । ନାୟିକାର ପୂର୍ବରାଗକୁ କବି ଯେପରି ପୂର୍ବୋକ୍ତ ଗୀତଟିରେ ରୂପ ଦେଇଛନ୍ତି, ସେହିପରି ବିରହକାଳୀନ ମନୋବେଦନାର କାରୁଣ୍ୟ ପ୍ରତିଫଳିତ ହୋଇଛି ପ୍ରତିମା କଣ୍ଠରେ କବି ଲେଖନୀରେ—

"ଗୃହୁଁ ଗୃହୁଁ ଦିନ ଯାଏ ବିତି
ଆସଇ ସକାଳ ଆସଇ ସଞ୍ଜ
ପାହିଯାଏ ରାତି ହୁଏ ପାହାନ୍ତି । ପଦ ।

ସେହ୍ହ ଘର ସେହ୍ହ ଗ୍ରାତ
ସେହ୍ହ ବାଡ଼ ସେହ୍ହ କାନ୍ଥ
କୂଆ କେହ୍ହ ନାହ୍ହିଁ ସେହ୍ହ ପୁରୁଣା ସାଥୀ । ୧ ।
ପ୍ରାଣ ଯେବେ କହେ "କାହିଁ"
ପ୍ରତିଧ୍ୱନି କହେ ନାହିଁ
ହୃଦୟ ଭିତରୁ ଉଠେ କରୁଣ ଗୀତ । '।

"କବୀର ଛବି" ଏକ ସାମାଜିକ ନାଟକ । 'ପ୍ରତିମା' ହେଉଛି ଏହ୍ହି ନାଟକର ନାୟିକା । ନାଟକର ନାୟିକା କବି ଭାବରେ ଚହିତ ହୋଇଥିବାରୁ ଲେଖକ ସ୍ତ୍ରୀ ଲିଙ୍ଗରେ 'କବୀ' ବୋଲି ନାମିତ କରିଛନ୍ତି । ଏଥିରେ ଦେଓ୍ୱାନବାବୁଙ୍କର ଆଦର୍ଶ ଦାମ୍ପତ୍ୟ-ଜୀବନ ଏବଂ ସ୍ନେହପ୍ରବଣ ପିତୃହୃଦୟର ସାର୍ଥକ ପରିଚୟ ପ୍ରଦାନ କରାଯାଇଛି । ନାଟକର ନାୟକ ହେଉଛି ସରୋଜକୁମାର । ଜଣେ ଦରଦୀ ବନ୍ଧୁ, ଆଦର୍ଶ ପ୍ରେମିକ ଏବଂ ଉଦାର ସମାଜସେବକ ଭାବରେ ସରୋଜକୁମାରର ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପରିପୂର୍ଣ୍ଣ । ନାଟକୀୟ କଥାଭାଗକୁ ଅଭିବୃଦ୍ଧି କରିବା ସହିତ ଚରିତ୍ରିକ ସଂଘର୍ଷ ଏବଂ ନାଟକୀୟତ୍ୱ ପ୍ରତିପାଦନ ପାଇଁ ଚନ୍ଦ୍ରଧର, ହାଡ଼ିବନ୍ଧୁ, ଗାୟତ୍ରୀ, ଲବଙ୍ଗ, ମନୋରଞ୍ଜନ ପ୍ରଭୃତି ଅପ୍ରଧାନ ଚରିତ୍ରଗୁଡ଼ିକର ସୃଷ୍ଟିକରାଯାଇଛି । ଘଟଣାଚକ୍ରରେ ପ୍ରଥମ ସାକ୍ଷାତରେ ସରୋଜକୁମାର ଏବଂ ପ୍ରତିମା ପରସ୍ପର ପ୍ରତି ଆକୃଷ୍ଟ ହୋଇପଡ଼ିଛନ୍ତି । ଅତ୍ୟନ୍ତ ସଂଯତ ଭାବରେ ନାଟ୍ୟକାର ସେମାନଙ୍କର ପ୍ରେମାନୁଭୂତିକୁ ରୂପାୟିତ କରିଛନ୍ତି ଖୁବ୍ ପ୍ରଭାବଶାଳୀ ସଂଳାପ ଜରିଆରେ । ଉଦାହରଣ ସ୍ୱରୂପ, ପ୍ରତିମା ଓ ସରୋଜର ଏକ ନିର୍ଦ୍ଦିଷ୍ଟ ସଂଳାପ ଉଲ୍ଲେଖ କରାଯାଇପାରେ ।

ସରୋଜ—କହୁ କହୁ ଏତେ ଦିନ କଟିଗଲା; ତମ ମନର କଥା କେଉଁଦିନ ହେଲେ ତ କହିଲ ନାହିଁ ?

ପ୍ରତିମା—କହିବି କଣ ? ଅନେକ କଥା ଭାବିଥାଏ । ଦେଖାହେଲାକ୍ଷଣି ସବୁ ଭୁଲିଯାଏ । ମନ ମୋର ରଙ୍ଗିନ ସ୍ୱପ୍ନରାଜ୍ୟକୁ ଉଡ଼ିଯାଏ । ଇଚ୍ଛାହୁଏ, ଫୁଲର ବାସ ହୋଇ ତମ ପ୍ରଶ୍ୱାସରେ ମିଶିଯାଆନ୍ତି । କୋଇଲିର କୁହୁସ୍ୱର ହୋଇ ତମ ହୃଦୟ ସାଥିରେ ଲୁଚକାଳି ଖେଳନ୍ତି, ତମର ରୂପଶିଖାରେ ନିଜକୁ ପତଙ୍ଗ ପରି ଜାଳି ଦିଅନ୍ତି ।

ସରୋଜ—ପ୍ରତିମା ! ବହୁତ ଦୂରରେ ତମେ କଳ୍ପନାର ଉତ୍ତୁଙ୍ଗ ଶିଖରରେ—ମାତ୍ର ଏଭଳି ନିଜର ସତ୍ତାକୁ ନିଃଶେଷ କରିଦେବାରେ ତମେ କି ଆନନ୍ଦ ପାଇବ ? ଚକୋର ଯଦି ଚନ୍ଦ୍ରିକାରେ, ମଧୁପ ଯଦି ଫୁଲରସରେ, ଚାତକ ଯଦି କଳାମେଘରେ ମିଶି-ଯାଆନ୍ତା, ତେବେ ସେଥିରେ ଆସ୍ୱାଦନର ଆନନ୍ଦ ମିଳନ୍ତା କି ? ମୋ ମନରେ ବି

ଅରେ ଅରେ ଏହିପରି କେତେ କଳ୍ପନା ଖେଳିଉଠେ । ସ୍ୱପ୍ନେ—ପରମାଣୁର ପରମାଣୁକୁ ନେଇ ତମେ ଥାଆନ୍ତ—ମୁଁ ଥାନ୍ତି—ଆଉ କେହି ନ ଥାନ୍ତେ । ଚନ୍ଦ୍ରାଲୋକରେ ବ୍ୟୋମଯାନରେ ଉଡ଼ି ବୁଲନ୍ତେ । ଚନ୍ଦ୍ରିକାର ନୀଳବକ୍ଷରେ ମଲ୍ଲିକମାଳା ପରି ଝୁଲୁଥାଆନ୍ତେ । ବକୁଳଭରା ଆମ୍ବ ବଗିଚାରେ ପଲ୍ଲବ ଶଯ୍ୟାରେ ବସି ଚନ୍ଦ୍ରାଲୋକରେ ବିଚରଣ କରୁଥାନ୍ତେ । ପୁଣି ପରମୁହୂର୍ତ୍ତରେ ବାସ୍ତବଜଗତକୁ ଖସିଆସେ । ଦେଖେ ଏଠି ଅଭିଳଷିତ କାମନା ପୂର୍ଣ୍ଣ ହେଲେ ଶାନ୍ତି ଆସେ ନା—ଆସେ କ୍ଳାନ୍ତି ।

ପ୍ରତିମା—କ୍ଳାନ୍ତି ଆସେ ?

ସରୋଜ—ହଁ, କ୍ଳାନ୍ତି ଆସେ । ମାନବ ଯୌବନରେ ପଦାର୍ପଣ କରି ଦେହନିଶାରେ ପାଗଳ ହୁଏ; ଆତ୍ମାର ଆହ୍ୱାନ ଶୁଣିପାରେ ନାହିଁ । ଆବଦ୍ଧ ପ୍ରାଣ ଦୁଇଟି ପିଞ୍ଜରାବଦ୍ଧ ପକ୍ଷୀ ପରି ମିଳିଯିବାକୁ ଚାହାନ୍ତି । ସେମାନଙ୍କର ପ୍ରବଳ ପିପାସା ଜାଗିଉଠେ ନୀଳଗଗନର ନୀଳ ସୀମାରେ ଉଡ଼ି ବିରାଟତା ସାଥିରେ ମିଶିବାକୁ । ମାତ୍ର ଯୌବନ ପାଗଳ ବୁଝିପାରେ ନା—ଦେହ ସହିତ ଦେହ ମିଶେ, ମାତ୍ର ଆତ୍ମା ସହିତ ଆତ୍ମା ମିଶେ କେତେ ଜଣଙ୍କର ? ହୀରକ ବଦଳରେ କରକା !

ପ୍ରତିମା—ମୁଁ ସେହି ହୀରକ ଖୋଜୁଛି—କରକା ନୁହେଁ ।"

ଗାୟତ୍ରୀ ଓ 'ସନ୍ନ୍ୟାସିନୀ'ଙ୍କର ସଂଳାପ ମଧ୍ୟରେ ଲେଖକ ସ୍ମରଣ କରାଇ ଦେଇଛନ୍ତି ଯେ ଓଡ଼ିଶା ହେଉଛି ଧୋଇ ମରୁଡ଼ିର ଦେଶ । ପ୍ରତ୍ୟେକ ବର୍ଷ କିଛି ନା କିଛି ପ୍ରାକୃତିକ ଉତ୍ପାତ ଲାଗି ରହିଥାଏ ଏହି ଦେଶରେ । ତେଣୁ ସେବାନୁଷ୍ଠାନଗୁଡ଼ିକ ସର୍ବଦା ଜାଗ୍ରତ ରହିବା ଆବଶ୍ୟକ । ବିଶେଷତଃ ଏ ଦେଶରେ ନାରୀକର୍ମୀର ଘୋର ଅଭାବ । ଏଥିପାଇଁ ଶିକ୍ଷାର ଅଭାବ ଏବଂ ସାମାଜିକ କୁସଂସ୍କାର ବହୁ ପରିମାଣରେ ଦାୟୀ । ଗାୟତ୍ରୀଙ୍କର ସଙ୍କୋଚ ଲକ୍ଷ୍ୟକରି ସନ୍ନ୍ୟାସିନୀ ମୁହଁରେ ଲେଖକ ବୀରକିଶୋର କୁହାଇଛନ୍ତି—

"ଦେଖିଲୁ ମଣିଷ ଜୀବନଟା ପାଣି ଫୋଟକା ପରି—ସମସ୍ତେ ସ୍ୱାର୍ଥର ଜୁଆରରେ ଭାସି ବୁଲୁଛନ୍ତି । ସେଇ ଖାଇବା, ପିଇବା, ପଇସା ରୋଜଗାରକରିବା, ସୁନା ଅଳଙ୍କାର ପିନ୍ଧିବା, କୋଠା ପିଟିବା, ମଉଜ ମଜଲିସ୍‌ରେ ଦିନ କାଟିବା । କୋଟି କୋଟି ଲୋକ ଯେ ପେଟପୁରା ଗଣ୍ଡାଏ ଖାଇବାକୁ ପାଉନାହାନ୍ତି, ହଜାର ହଜାର ଲୋକ ଯେ ଖାଇବା ବିନା ମରି ଯାଉଛନ୍ତି, ରୋଗରେ ପଡ଼ିଲେ ଔଷଧ ଟିକିଏ ପାଉନାହାନ୍ତି, ତାଙ୍କ କଥା କେତେଜଣ ଭାବୁଛନ୍ତି ? ତମେ ଯେଉଁମାନେ ସହରରେ ଅଛ, ଗାଁର ଅବସ୍ଥା କାହୁଁ ଜାଣିବ ?"

ବୈଦ୍ୟନାଙ୍କ ପୁତ୍ର ସରୋଜର ଭବିଷ୍ୟତ ସମ୍ପର୍କରେ ଆଲୋଚନା ଚାଲିଥାଏ । ଆଲୋଚକ ହେଲେ ସରୋଜର ପିତା ଏବଂ ହେଡ଼ମାଷ୍ଟର । ସମାଜସେବାପ୍ରତି ସରୋଜର ଅତ୍ୟଧିକ ଆକର୍ଷଣ ହେଡ଼ମାଷ୍ଟର ମହୋଦୟ ସ୍ୱାଗତ କରିପାରୁ ନ ଥିଲେ । ତାଙ୍କର ପ୍ରିୟ ଓ ମେଧାବୀ ଛାତ୍ର ସରୋଜ ଉଚ୍ଚ ପଦବୀର ଅଧିକାରୀ ହେଲେ ସେ ଅଧିକ ଗୌରବାନ୍ୱିତ ଅନୁଭବ କରିବେ । ତଥାପି ସେ କଥା ପ୍ରସଙ୍ଗରେ କହିଥିଲେ—"ଈଶ୍ୱର କରନ୍ତୁ, ତାର ଏ ସେବା ସ୍ପୃହା ସମଗ୍ର ଜାତି ଓ ଦେଶ ମଧ୍ୟରେ ଖେଳିଯାଉ ।" ଏହାହିଁ ଥିଲା ସ୍ୱାଧୀନତା ସଂଗ୍ରାମୀ ନାଟ୍ୟକାର ବୀରକିଶୋରଙ୍କ ଜୀବନ ଦର୍ଶନ । ଏ ଦେଶର ତରୁଣ ସମାଜ ଦେଶ-ସେବାପାଇଁ ବାହାରି ଆସନ୍ତୁ ବୋଲି ସେ କାମନା କରୁଥିଲେ । ଏହି ଉଦ୍ଦେଶ୍ୟରେ ତାଙ୍କର ଲେଖନୀ ଥିଲା ସର୍ବଦା ଚଳଚଞ୍ଚଳ । ନାଟକଟି ନିବିଡ଼ ଅନ୍ତର୍ଦ୍ୱନ୍ଦ୍ୱରେ ଭରପୂର ହୋଇଛି ଚରିତ୍ରିକ ସଂଘର୍ଷ ଓ ଘଟଣାର ପ୍ରବାହ ମଧ୍ୟରେ । ନାୟକ ସରୋଜ ଏକ ଅଭୂଙ୍ଖା-ମଣାର ବଶବର୍ତ୍ତୀ ହୋଇ ଗୃହତ୍ୟାଗ କରିଛି ଏବଂ ଆଶ୍ରୟ ଗ୍ରହଣ କରିଛି ଏକ ଆଶ୍ରମରେ । ପ୍ରିୟ ପୁରୁଷକୁ ହରାଇ ଅନୁତାପ ଓ ବିରହାନଳରେ ଦଗ୍ଧୀଭୂତ ପ୍ରତିମା ହୋଇଛି ଉତ୍କଟ ରୋଗରେ ଶଯ୍ୟାଶାୟିନୀ । ସାମଗ୍ରିକ ଭାବରେ ନାଟକୀୟ ରସାନୁଭୂତ ବିୟୋଗାତ୍ମକ ହେଲେହେଁ ଯବନିକାର ପତନ ସମୟରେ ନାୟକ ଓ ନାୟିକା ଉଭୟ ଆଶ୍ରମରେ ଥାଇ ପୁଣି ପରସ୍ପରର ଦର୍ଶନରେ ବିମୁଗ୍ଧ ହୋଇ ଉଠିଛନ୍ତି ।

ଆଲୋଚ୍ୟ ନାଟକଟି ବୀରକିଶୋରଙ୍କ ମାନସିକ ଅବବୋଧର ପରିଚୟ ଦେଇଥାଏ । ସଂଳାପ ଯୋଜନା ଓ ଚରିତ୍ରିକ ବିକାଶକ୍ରମରେ ଅନେକ ଅପୂର୍ଣ୍ଣତା ଲକ୍ଷ୍ୟ କରାଗଲେହେଁ ଭାବାବେଗର ପରିପୂର୍ତ୍ତିର ସଂଯୋଜିତ ଗୀତଗୁଡ଼ିକରେ କବିଙ୍କର ବିମଳ ପ୍ରତିଭାର ପ୍ରତିଫଳନ ବାରିହୋଇ ପଡ଼ିଥାଏ ।

---

# 'ସ୍ମୃତି କଣିକା''—ଗାନ୍ଧୀବର୍ଷରେ ଅପୂର୍ବ ନୈବେଦ୍ୟ

ମୋହନଦାସ କରମଚାନ୍ଦ ଗାନ୍ଧୀ ଥିଲେ ଭାରତର ସ୍ୱାଧୀନତା ସଂଗ୍ରାମର ଅଗ୍ରପୂଜ୍ୟ ସେନାପତି । ସଂଗ୍ରାମରେ ରକ୍ତପାତ ହୁଏ, ଶତ୍ରୁ ପ୍ରତି ଆକ୍ରୋଶ, ଘୃଣା ଓ ବିମୁଖତା ସୃଷ୍ଟି ହୁଏ । ଶତ୍ରୁର ଅକଲ୍ୟାଣ ଚିନ୍ତାକରି ବିଜୟୀ ପକ୍ଷ ଜୟଜୟକାର ଘୋଷଣା କରନ୍ତି । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ସଂଗ୍ରାମ ଅବ୍ୟାହତ ରହିଥିଲା, ତାହା ଥିଲା ପୃଥିବୀର ଇତିହାସରେ ଏକ ବ୍ୟତିକ୍ରମ । ଏହି ଯୁଦ୍ଧରେ ଶତ୍ରୁ ପ୍ରତି ଅସୂୟା ଅଥବା ବିମୁଖତା ନ ଥିଲା । ଏଠାରେ ଅହିଂସା ଓ ପ୍ରେମ ଜରିଆରେ ଶତ୍ରୁକୁ ଜୟ କରି ସ୍ୱାଧୀନତା ଲାଭ ପାଇଁ ପ୍ରାଣପାତ କରାଯାଇଥିଲା । ଲକ୍ଷ ଲକ୍ଷ ଭାରତୀୟ ହସି ହସି କାରାବରଣ କରିଥିଲେ, ସର୍ବସ୍ୱ ହରାଇଥିଲେ ଏବଂ ଅଶେଷ ଦୁଃଖବରଣ କରିଥିଲେ । ସେଥିପାଇଁ ଗାନ୍ଧୀଙ୍କୁ ଯେଉଁଦିନ ହତ୍ୟାକାରୀ ଗୁଳିବିଦ୍ଧ କଲା, ସମଗ୍ର ପୃଥିବୀରେ ହାହାକାର ପଡ଼ିଯାଇଥିଲା । ଜଣେ ଚିନ୍ତାନାୟକ ଆବେଗ କଣ୍ଠରେ କହି ପକାଇଥିଲେ—''ଆଗାମୀ ଦିନରେ ଲୋକମାନେ ବିଶ୍ୱାସ କରିବେ ନାହିଁ ଯେ ଗାନ୍ଧୀପରି ଜଣେ ବ୍ୟକ୍ତି ଏହି ମାଟି ଚୋଡ଼ି ଧରାରେ ନିଃଶ୍ୱାସ ପ୍ରଶ୍ୱାସ ଗ୍ରହଣ କରୁଥିଲେ ।'' ଗାନ୍ଧୀଜୀଙ୍କ ବାଣୀ ଥିଲା ଭାରତୀୟମାନଙ୍କ ପାଇଁ ବିପ୍ଳବର ଆହ୍ୱାନସଙ୍କେତ । ସେହି ମହାପୁରୁଷଙ୍କ ଗୁଣାବଳୀ ଓ ବାର୍ତ୍ତା ସ୍ମରଣ କରାଇ ନେତାମାନେ ଭାଷଣ ଦେଉଥିଲେ ଜନତାକୁ ଜାଗ୍ରତ କରିବାପାଇଁ ଏବଂ କବିମାନେ ଲେଖୁଥିଲେ କବିତା ବିପ୍ଳବର ଅଗ୍ନିଶିଖା ଧରାଇଦେବା ପାଇଁ । ଜାତୀୟ କବି ବୀରକିଶୋର ତାଙ୍କରି ଆହ୍ୱାନରେ ଦୀର୍ଘକାଳ କାରାଗାରର ରୁଦ୍ଧଦ୍ୱାର ମଧ୍ୟରେ ଆବଦ୍ଧ ହୋଇ କେବଳ ଲେଖି ଚାଲିଥିଲେ ଉତ୍ତେଜନାପୂର୍ଣ୍ଣ ଅଗ୍ନିଗର୍ଭ କବିତା ଯାହାକୁ ଗାଇ ଗାଇ ବାନରସେନା ବିପ୍ଳବର ପତାକା ଧରି ଚାଲିଥିଲେ ଆଗକୁ ଆଗକୁ । ଗାନ୍ଧୀଜୀ କଣ କରିବାକୁ ଇଚ୍ଛା କରୁଥିଲେ, ଗୀତ ମାଧ୍ୟମରେ ବୀରକିଶୋର ଶୁଣାଇ ଚାଲିଥିଲେ । ତେଣୁ ଗାନ୍ଧୀଜୀଙ୍କ ଭାବଧାରା ଅତ୍ୟନ୍ତ ସହଜରେ ଜନସାଧାରଣଙ୍କ ମନରେ ଗଭୀର ଭାବରେ ରେଖାପାତ କରିପାରୁଥିଲା ।

ଗାନ୍ଧୀଜୀଙ୍କ ଆହ୍ୱାନରେ ସ୍ୱାଧୀନତା ସଂଗ୍ରାମର ସୈନିକଗଣ ସର୍ବତ୍ୟାଗୀ ହୋଇଥିଲେ । ମହାତ୍ମାଙ୍କର ବାଣୀ ଓ ଆଚରଣ ଲକ୍ଷ ଲକ୍ଷ ଲୋକଙ୍କର ହେଲା ଜପମାଳା । ବୀରକିଶୋର ଜେଲରେ ଥାଇ ସେଇ କଥା ଲେଖିଛନ୍ତି 'ଆତ୍ମସମର୍ପଣ' କବିତାରେ—

''ବନ୍ଧୁ !
ସରିଗଲା, ମୁଁ ତ ସରିଗଲି;
ଧରମ କରମ ଯାହା ଥିଲା ମୋର
ତା ଲାଗି ସବୁ ତ ଛାଡ଼ିଦେଲି ।''

ଅତ୍ୟନ୍ତ ଅଚମ୍ଭିତ କଥା ଯେ ଲୋକମାନେ ଦେବତା ପରି ଜ୍ଞାନ କଲେ ଗାନ୍ଧୀ-ମହାତ୍ମାଙ୍କୁ । ତାଙ୍କର ଛବି ପୂଜା ହେଲା ଘରେ ଘରେ । ତାଙ୍କର ଆହ୍ୱାନରେ ମାତୃଭୂମିର ସ୍ୱାଧୀନତାପାଇଁ କର୍ମୀମାନେ ପାପପୂଣ୍ୟ ଜ୍ଞାନ ହରାଇ ବସିଲେ । ଗାନ୍ଧିଜୀଙ୍କ ପ୍ରେରଣାରେ କୁସଂସ୍କାର ପରିପୂର୍ଣ୍ଣ ସମାଜରେ ନୂତନ ଚେତନା ସୃଷ୍ଟିହେଲା । ଏଠାରେ ସମସ୍ତେ ସମାନ । ମାନବତ୍ୱର ଭେଦଭାବ, ଛୁଆଁ ଅଛୁଆଁର ସଂକୀର୍ଣ୍ଣତାର ଅନୁଚିନ୍ତା ରହିବା ଉଚିତ ନୁହେଁ । ପ୍ରତ୍ୟେକ ଲୋକର ହୃଦୟରେ ପ୍ରଭୁ ନାରାୟଣ ଅବସ୍ଥାନ କରୁଛନ୍ତି । ତେଣୁ ସମସ୍ତେ ପରସ୍ପରର ଭାଇ ଭାଇ ପରି ଚଳିବା ଉଚିତ । ହସି ହସି ନିର୍ବିକାର ଭାବରେ ଗାନ୍ଧୀଙ୍କ କଥାରେ ଲୋକମାନେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । କୌଣସି ପ୍ରକାର ଶୋଷଣ ଓ ସାମ୍ରାଜ୍ୟବାଦୀ ଅତ୍ୟାଚାରକୁ ଭ୍ରୂକ୍ଷେପ କଲେନାହିଁ । କବିକଣ୍ଠରେ ସେଇକଥା ସୂଚେଇ ଦିଆଯାଇଛି —

"ସ୍ୱାଧୀନ ସ୍ୱାଧୀନ ଜପି ରାତଦିନ
ଲକ୍ଷ୍ୟ ରଖିଥିଲି ଦିଲ୍ଲୀ ସିଂହାସନ
ପରାଧୀନ ଆଜ
ତା ପ୍ରେମ-କାରାରେ
ଜାଣି ଜାଣି ହାତକଡ଼ି ନେଲି ।"

(ଆତ୍ମସମର୍ପଣ)

ଭାରତୀୟ ସମାଜରେ ଭଗବତ୍ ଗୀତାର ବାଣୀ ଯୁଗ ଯୁଗ ଧରି ଝଙ୍କୃତ ହୋଇ-ଆସୁଛି । ଜନସାଧାରଣ ବିଶ୍ୱାସ କରନ୍ତି ଯେ ପୃଥିବୀର ଭାର ନିବାରଣ ପାଇଁ ଯୁଗେ ଯୁଗେ ଅବତାର ପୁରୁଷ ଏହି ମର୍ତ୍ତ୍ୟମଣ୍ଡଳରେ ଜନ୍ମଗ୍ରହଣ କରିଆସନ୍ତି । ସେହି ହିସାବରେ ଗାନ୍ଧିଙ୍କୁ ଲୋକମାନେ ଅବତାରପୁରୁଷ ବୋଲି ବିଶ୍ୱାସ କରୁଥିଲେ । ସେ ଯେଉଁ ସମୟରେ ଭାରତରେ ଆବିର୍ଭୂତ ହେଲେ, ସେକାଳରେ ଧନୀମାନଙ୍କର ଗରିବମାନଙ୍କ ଉପରେ ଅତ୍ୟାଚାର ସୀମାଟପିଯାଇ ହୋଇ ପଡ଼ିଥିଲା । ପୌରୋହିତ୍ୟ ପ୍ରଥାର କଳଙ୍କିତ ବିଗ୍ରହଧାରୀ ସମାଜରେ ନାନା ମ୍ଳେଚ୍ଛଭାବନା ସଞ୍ଚାରିତ କରିବାରେ ସହାୟକ ହୋଇଥିଲା । କୃଷୀ ଓ ମୂଲିଆଶ୍ରେଣୀ ଯେଉଁମାନେ ସମାଜର ଅଧିକାଂଶ ଏବଂ ମେରୁଦଣ୍ଡ ସ୍ୱରୂପ, ସେମାନେ ନାନାଭାବରେ ଅତ୍ୟାଚାରିତ ଏବଂ ଉତ୍ପୀଡ଼ିତ ହେଉଥିଲେ । ଚତୁର୍ଦ୍ଦିଗରେ ହତାଶା ଓ ଅଭିସମ୍ପାତର ବାତାବରଣ । ସାମ୍ରାଜ୍ୟବାଦୀଙ୍କ କୂଟନୀତି ଓ ହିଂସାଆଚରଣ ଯୋଗୁ ପୃଥିବୀର ବହୁ ଦୁର୍ବଳ ଜାତି ଦାସତ୍ୱର ବନ୍ଧନରେ କବଳିତ । ଏହିପରି ଏକ ଯୁଗସନ୍ଧି-କ୍ଷଣରେ ଗାନ୍ଧୀ ମହାତ୍ମାଙ୍କର ଆବିର୍ଭାବ ହୋଇଥିଲା । ସେ କେବଳ ଭାରତର ସ୍ୱାଧୀନତା ପାଇଁ ଲଢ଼ାଇ କରୁ ନ ଥିଲେ, ସମଗ୍ର ପୃଥିବୀର ପରାଧୀନ ଏବଂ ଅତ୍ୟାଚାରିତ ସମାଜପାଇଁ ତାଙ୍କର ହୃଦୟରେ ମମତା ଘେରି ରହିଥିଲା । ତେଣୁ ବୀରକିଶୋର ଲେଖିଥିଲେ—

"ଏ ଯେ ଯୁଗ ଅବତାର ଆସୁଛି
ବିଶ୍ୱଜଗତର                କଳଙ୍କ ପୋଛିବ
ତାକୁ ବୁଝିବାର ଲୋକ ବୁଝୁଛି ।
ଅସହ୍ୟ ଧସ୍ୱରେ ଧର୍ମ ଅତ୍ୟାଚାର
ଅଳସେ ବିଳାସେ ଦେଶ ହାହାକାର
କେତେ ମ୍ଳେଚ୍ଛ ବୁଦ୍ଧି ବଢ଼ି ଉଠୁଛି ।
× × ×
ବେଶୀ ଦିନ ନାହିଁ ତୁଟିବ ଏ କଳି
ସବୁ ଭେଦାଭେଦ ପାଇବ ତ ବଳି
ଧୀରେ ଅହିଂସା ଶକତି ଖେଳୁଛି ।"

(ବଳି)

ଗାନ୍ଧୀ ଥିଲେ ଜୀବନ୍ତ ଦେବତା । କାଠ ପଥରର ଦେବତା ମନ୍ଦିରରେ ପୂଜା ପାଆନ୍ତି ସିନା, ସେ ତ କଥା କହନ୍ତି ନାହିଁ । ତାଙ୍କର ମହିମା କ୍ୱଚିତ ସନ୍ଥ ଓ ସାଧକମାନେ ଉପଲବ୍ଧି କରିପାରନ୍ତି । କିନ୍ତୁ ମହାତ୍ମା ଗାନ୍ଧୀ ଏପରି ଏକ ବ୍ୟକ୍ତିତ୍ୱ ଥିଲେ, ଯାହାଙ୍କର ବାଣୀ ବିଦ୍ୟୁତ୍ ଶକ୍ତି ପରି ପ୍ରତ୍ୟେକ ହୃଦୟରେ ପ୍ରବାହିତ ହେଉଥିଲା । ଦେବତାଙ୍କ ପାଇଁ ବ୍ରତ, ଉପବାସ ପାଳନ କରାଯାଏ ନିଜର ବ୍ୟକ୍ତିଗତ ସ୍ୱାର୍ଥ ହାସଲ କରିବା ପାଇଁ । ମାତ୍ର ଗାନ୍ଧୀଙ୍କୁ ଯେଉଁମାନେ ଆଶ୍ରୟ କରିଥିଲେ, ତାଙ୍କର ଆଦର୍ଶକୁ ଦୀକ୍ଷା କରି ଗ୍ରହଣ କରିଥିଲେ, ସେମାନେ ଦାରିଦ୍ର୍ୟ ବରଣ କରିଥିଲେ, ହାତକଡ଼ି ପିନ୍ଧି ନିର୍ମମ ଅତ୍ୟାଚାର ସହିଥିଲେ, କୌଣସି ସମ୍ମାନ ଓ ଆଭିଜାତ୍ୟ ସେମାନଙ୍କୁ ବିଚଳିତ କରିପାରି ନ ଥିଲା । ଏକମାତ୍ର ଧ୍ୟେୟ ଥିଲା ଜାତି ପାଇଁ ଅକୁଣ୍ଠ ଭାବରେ ଜୀବନ ଉତ୍ସର୍ଗ କରିବା । କଟକ ଜେଲରେ ରାଜବନ୍ଦୀ ଥାଇ କବି ବୀରକିଶୋର ଗାନ୍ଧୀଜୀଙ୍କ ନାମରେ ପ୍ରତିଜ୍ଞା କରିଥିଲେ ଏହିପରି—

"ଛତିକି ପଥର କରି ସବୁ ଦୁଃଖ ସହିବି
ସହିବି ।
ଆସୁ ଝଡ଼ ବତାସ, ହେବି ନାହିଁ ହତାଶ,
ତୁମ୍ଭର ପତାକା ଧରି ଦାଣ୍ଡେ ଦାଣ୍ଡେ ବୁଲିବି,
ବୁଲିବି ।
× × ×
ଚାହେଁନା ମୁଁ ମୁକତି, ନିଜ ଲାଗି ଭକତି
ହାତକଡ଼ି ପାଏ ପଛେ ପୂଜାଫୁଲ ତୋଳିବି
ତୋଳିବି ।

ଲୋଡ଼ା ନାହିଁ ସରଗ, ଲୋଡ଼େ ପଛେ ନରକ
ମୋ ଦେଶ ଉଦ୍ଧାର ଲାଗି ମାଟି ତଳେ ମିଶିବ
ମିଶିବ ।” (ମାନସିକ)

ଗାନ୍ଧୀ କେବଳ ରାଜନୈତିକ ସ୍ୱାଧୀନତା ଇଚ୍ଛା କରୁ ନ ଥିଲେ । ସେ ଏପରି ଏକ ସ୍ୱରାଜ୍ୟ କାମନା କରୁଥିଲେ, ଯେଉଁଠାରେ କୌଣସି ଶୋଷଣ ରହିବ ନାହିଁ । ଧନୀ ନିର୍ଦ୍ଧନ ମଧ୍ୟରେ ପାର୍ଥକ୍ୟ ଅନେକ ପରିମାଣରେ ଦୂରୀଭୂତ ହୋଇଯିବ । ଲୋକମାନେ ହେବେ ସ୍ୱାବଲମ୍ବନଶୀଳ । କୁଟୀର ଶିଳ୍ପ ଏବଂ ଯନ୍ତ୍ର ଶିଳ୍ପ ପରସ୍ପରର ପରିପୂରକ ହେବେ । ପାଶ୍ଚାତ୍ୟ ଜଗତରେ ଶିଳ୍ପବିପ୍ଳବ ଭୌତିକ ଐଶ୍ୱର୍ଯ୍ୟକୁ ନେଇ ମୁଷ୍ଟିମେୟ ପୁଞ୍ଜିପତିଙ୍କ ଘରେ ଠୁଳ କରିଦେଇଛି । ପଲ୍ଲୀର ନିରଳସ ଜୀବନ ଛାରଖାର ହୋଇଯାଇଛି । ଶ୍ରମ ଉଦ୍ଦେଶ୍ୟରେ ମୂଲିଆ କୂଲି ଗାଁର ଭିଟାମାଟି ଛାଡ଼ି ଶିଳ୍ପନଗରୀର ଝୁମ୍ପୁଡ଼ି ମଧ୍ୟରେ ଆଶ୍ରୟ ଗ୍ରହଣ କରି ଅତ୍ୟନ୍ତ ଅବହେଳିତ ଏବଂ ବିକଳ ଜୀବନଯାପନ କରୁଛନ୍ତି । ଗାନ୍ଧୀ ଏହି ପ୍ରକାର ଶିଳ୍ପ-ବିକାଶର ବିରୋଧୀ ଥିଲେ । ଏଥିରୁ କେହି ବୁଝିବା ଉଚିତ ନୁହେଁ ଯେ ଗାନ୍ଧିଜୀ ଯନ୍ତ୍ରର ବିରୋଧୀ ଥିଲେ । ସେ ଯନ୍ତ୍ର ପ୍ରତି ଯେଉଁ ଆସୁରୀ ମୋହ ରହିଛି ମଣିଷର, ତାକୁ ସେ ସ୍ୱାଗତ କରିପାରି ନ ଥିଲେ । ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତରେ ଜାତୀୟ ସଂସ୍କୃତିର ଜୟଗାନ କରାଯାଉଥିଲା । ସେଠାରେ ନିତାନ୍ତ ନିଃସ୍ୱ ମଧ୍ୟ ଦେଶକୁ ଆପଣାର ବୋଲି ମନେକରିବ ଏବଂ କାହାର ଆଶ୍ରିତ ହେବ ନାହିଁ । ଶିଳ୍ପର ପ୍ରସାର ମନୁଷ୍ୟକୁ କ୍ରୀତଦାସ କରିଦେବ ବୋଲି ତାଙ୍କର ଆଶଙ୍କା ରହିଥିଲା । ଭାରତର ଲକ୍ଷ ଲକ୍ଷ ପଲ୍ଲୀର ଉନ୍ନତି କେବଳ ସମ୍ଭବ ହେବ କୁଟୀରଶିଳ୍ପର ବିକାଶ ଦ୍ୱାରା । ସେଠାରେ ଶୋଷଣର ଅବକାଶ ରହିବ ନାହିଁ ।

“କଳଘର” କବିତାରେ ବୀରକିଶୋର ସେହି ଗାନ୍ଧିବାଣୀକୁ କବିତ୍ୱ ପ୍ରକାଶ କରିଦେଇଛନ୍ତି ।

“କଳଘର ନୁହେଁ, କଳିଘର ଭାଇ,
କଳି ଲାଗି ସିନା ଯାବତ କଳି ।
କଳିଯୁଗେ କଳ ଦାନବରୂପୀ
ବ୍ୟାପି ରହିଅଛି ମାନବ ପୃଥ୍ୱୀ,
ମଧ୍ୟବିତ୍ତଙ୍କର ରକତ ଶୋଷି
ମୂଲିଆଙ୍କୁ ଦିଏ ଚରଣେ ଦଳି ।
ଲକ୍ଷପତିଙ୍କୁ ସେ ଲୋଭ ଦେଖାଇ
ବିଳାସ-ପଙ୍କରେ ଦିଏ ବୁଡ଼ାଇ
ଝିଙ୍କିବା ମାତ୍ର ସେ ବଣି ପୋଷେ ନିତି
କାରିଗର ପଟେ ପକାଏ ଧୂଳି ।

× × ×

କଳ ପାଇଁ ବଢ଼େ ବଢ଼ ସହର
ରୋଗର ଗୋଦାମ ନରକ ଘର,
ସରଗଶୋଭାର ହାଟ ଭାଙ୍ଗିଯାଏ
ପଲ୍ଲୀ ଶମଶାନ ହୁଅଇ ଜଳ ।
ଦଳିତ ଦୁଃଖୀଙ୍କି ରକ୍ଷିବା ପାଇଁ
ଯୁଗ ଅବତାର ଆସିଛୁ ତୁହିଁ
କଳ ଅତ୍ୟାଚାର ଚାପିବ ମୁକର
ବାମନ ଯେସନ ଚାପିଲେ ବଳୀ । (କଳଘର)

ସ୍ୱାଧୀନତା ଆନ୍ଦୋଳନ କାଳରେ କେହି ବିଶ୍ୱାସ କରିପାରୁ ନ ଥିଲେ ଯେ ସତ୍ୟାଗ୍ରହ, ଅସହଯୋଗ ଏବଂ ଅହିଂସା ଉପାୟରେ ପ୍ରବଳ ପ୍ରତାପୀ ଇଂରେଜ ରାଜଶକ୍ତିକୁ ବିତାଡ଼ିତ କରି ସ୍ୱାଧୀନତା ହାସଲ କରାଯାଇପାରିବ । ତେଣୁ ଯେଉଁ କେତେଜଣ ଗାନ୍ଧିଜୀଙ୍କ କଥାରେ ପରିଚାଳିତ ହେଉଥିଲେ, ତାଙ୍କଠାରୁ ଅନୁଗତ ଭାଇ ସ୍ୱଜନ ଦୂରେଇ ରହୁଥିଲେ । ଇଂରେଜ ରାଜଶକ୍ତିକୁ ଅସନ୍ତୁଷ୍ଟ କରିବାପାଇଁ ସେମାନେ ସାହସ ସଂଚୟ କରିପାରୁ ନ ଥିଲେ । ଗାନ୍ଧୀ କହୁଥିଲେ, "ତୁମେ ନିଜେ ତ୍ୟାଗୀ ହୁଅ, ଜନ୍ମଭୂମି ପାଇଁ କଷ୍ଟ ବରଣ କର । ଦିନ ଆସିବ, ଯେତେବେଳେ ରକ୍ତ ପାଇଁ ରକ୍ତ ଝୁରିବ, ଆପଣାର ବନ୍ଧୁ ସ୍ୱଜନ ଆଉ କରଛଡ଼ା ଦେଇ ରହିପାରିବେ ନାହିଁ । ସେମାନେ ଆପେ ଆପେ ଆସି ଏହି ସଂଗ୍ରାମରେ ଝାସଦେବେ । ଏଥିପାଇଁ ଅସୀମ ଧୈର୍ଯ୍ୟ ଧାରଣ କରିବାକୁ ହେବ । ଜଣେ ବୀରକିଶୋର ଲେଖିଲେ—

ଯିଏ ଯିବାର ଯାଆନ୍ତୁ ଚାଲି, (ତୁ) ନ କର ମନେ ଭାବନା
ମୁକ୍ତି ପଥର ଯାତ୍ରୀ ତୁହିରେ ତୋର ଜୀବନବ୍ୟାପୀ ସାଧନା ।

ଆସିବେ କେତେ ଯିବେରେ କେତେ
କାନ୍ଧ ମିଳାଇ ସବୁରି ସାଥେ
ଚାଲିବୁ ବାଟ ସଭିଙ୍କି କରି ବନ୍ଦନା ।
ଭାବିବୁ ନାହିଁ ଆପଣା ପର
ଆଜି ଯେ ପର କାଲି ସେ ଘର
ଫେରିବେ ନିଶ୍ଚେ ଦେଖିଲେ ତୋର ଯାତନା ।
ଆସିବ ବେଳ ପଡ଼ିବୁ ଏକା
ମାତ୍ର ଆସିବ ପ୍ରବଳ ଧକ୍କା
ଜାଗ୍ରତ ହେବରେ ତୋର ଚେତନା ।

ରକ୍ତ ଦେଖିଲେ ରକତ ତୋର
ଭକ୍ତ ହେବେରେ ଅସି ମୂଢର
ଶତ୍ରୁ ବଢ଼ିବ, ପାଇବୁ ଶତ ସାନ୍ତ୍ୱନା ।

ନିର୍ଭୀକ ଯେବେ ହେବୁରେ ରୁଦ୍ର
ମୁଖ୍ୟ ମନ୍ତ୍ରରେ ଦୀକ୍ଷିତ ହୋଇ
ମୁକ୍ତ ହେବୁ ବୁ ପୂର୍ଣ୍ଣ ହେବ ତୋ ବାସନା ।"

ବାସ୍ତବତ ଗାନ୍ଧିଜୀଙ୍କ ଆଗମନ ପୂର୍ବରୁ ପୂର୍ଣ୍ଣ ସ୍ୱାଧୀନତା ପାଇଁ ଆନ୍ଦୋଳନର ଡାକରା ଆଉ କେହୁ ଦେଇ ନ ଥିଲେ । ବହୁକାଳ ପର୍ଯ୍ୟନ୍ତ ବ୍ରିଟିଶ ରାଜ୍ୟଗୋଷ୍ଠୀ ମଧ୍ୟରେ ସୀମିତ ସ୍ୱାୟତ୍ତଶାସନର ଅଧିକାର ହିଁ ଥିଲା ଏକମାତ୍ର ସ୍ଲୋଗାନ । ସତେ ଯେପରି ମହାତ୍ମା ଗାନ୍ଧୀ ଏହି ଜଡ଼ପ୍ରାଣ ଜାତିକୁ ଜାଗ୍ରତ କରିଦେଲେ । ତାଙ୍କର ଆହ୍ୱାନରେ ଯେଉଁ କମ୍ପନ ଥିଲା, ତାହାକୁ ସ୍ମରଣ କରି ଡଃ ବୀରକିଶୋର ଲେଖିଲେ—

"ଗାଇଲା କ ମନ୍ତ୍ର ବାଜିଲା କ ଶଙ୍ଖ
କୋଟି ହୃଦୟ ତ ଏକାଠି ହେଲା,
ବାଳ, ବୃଦ୍ଧ, ଯୁବା ହେଲେ ଅସି ଭକ୍ତ
ଜାତି ମହାଯଜ୍ଞ ଶୋଭା ବଢ଼ିଲା ।

ମଧୁରୁ ମଧୁର ତାର ପ୍ରେମ ଗିର
ସବୁ ଜାତିଙ୍କର ମନ ମୋହିଲା,
ଅସ୍ପୃଶ୍ୟ ଅଜଣା ହେଲା ଜଣାଶୁଣା
ପର ତ ଆପଣା ପରି ଲାଗିଲା ।

ଜାତି, ପନ୍ଥ, ଧନ, କୁଳ ଅଭିମାନ
ତାକୁ ଡର ଧାନ ଛାଡ଼ି ଭାଜିଲା,
ପଲକେ ପଲକେ ତାକାଲ ମାତରେ
ଦୂର ତ ନିକଟ ବନ୍ଧୁ ସାଜିଲା ।

ଦେଖି ତା'ର ଗୁଣ ଦେବଦତ୍ତ ଜ୍ଞାନ
ଅରି ଦମ୍ଭପଣ ଛାଡ଼ି ଭାଜିଲା,
'ତା' ଲାଗି ବନ୍ଧୁକ, ବନ୍ଧୁକର ମୁନ
ବାଣୀ ତାଠ ପ୍ରାଣ ହସି ବରିଲା ।"

( ତାହୁଁ ଅଲଗ ? )

ମହାତ୍ମା ଗାନ୍ଧୀଙ୍କୁ ଅବତାରସ୍ୱରୂପ ଏବଂ ଈଶ୍ୱରଙ୍କ ଦୂତ ରୂପେ କବି ବର୍ଣ୍ଣନ କରିଛନ୍ତି । ତେଣୁ ଇଂରେଜ ସରକାରଙ୍କ ପ୍ରବର୍ତ୍ତିତ ବ୍ୟବସ୍ଥାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଗାନ୍ଧୀ ଯେତେବେଳେ ଅନଶନ କଲେ, ଭାରତ କାହିଁକି, ପୃଥିବୀର ରାଜନୈତିକ ମହଲରେ ହୁଲସ୍ଥୂଳ ପଡ଼ିଗଲା । ଗାନ୍ଧୀଙ୍କର ପ୍ରିୟ ଚେଲା ବୀରକିଶୋର ମହାତ୍ମାଙ୍କର ପ୍ରାଣସଙ୍କଟ ଆଶଙ୍କା କରି ଗାଇଥିଲେ—

"ସ୍ୱରାଜ୍ୟ ପଛକେ ଡେରି ହୋଇଯାଉ
ଫେରାଇ ନ ନିଅ ତୁମ ଦୂତକୁ ।"

ପ୍ରଭୁ ଜଗନ୍ନାଥଙ୍କୁ ପ୍ରାର୍ଥନା କରି ବୀରକିଶୋର ଲେଖିଥିଲେ—

"ଭକତ ତମର ରକତ ଶୁଖାଇ
ଡାକଇ ଜଗତ ପାଇଁକି,
ଜଗତର ନାଥ ତମେ ଜଗନ୍ନାଥ
ତା ଡାକ ଶୁଣିବ ନାହିଁକି ।
ଯୋଗୀ ନୁହେଁ ସେ ତ ଅସହଯୋଗୀ
ଭୋଗୀ ନୁହେଁ ସେ ତ ସର୍ବସ୍ୱ ତ୍ୟାଗୀ
ଯୌବନ ପ୍ରଭାତୁ ଯୋଗ କରଇ ସେ
ଜଗତ ମଙ୍ଗଳ ଚାହିଁକି ।
ମାନବ ଜାତିକି ମାନବ ନୀତିକି
ବନ୍ଧୁ କରି ସଦା ମାନବପ୍ରୀତିକି
ଅନୁସରି ଚାଲେ ମାନବ ପନ୍ଥା
ବଦଳାଇ କାଳ ଗତିକି ।
ସତ୍ୟ ଯେବେ ଧରା ରବି ଶଶୀ ତାରା
ସତ୍ୟ ଯେବେ ଶୀତ ଗ୍ରୀଷ୍ମ ବର୍ଷାଧାରା
ସତ୍ୟର ମହିମା ଅକ୍ଷୁଣ୍ଣ ରଖି ହେ
ଚରଣେ ମାଗୁଣି ଏତିକି ।

ଆଜୀବନ ଗାନ୍ଧୀଙ୍କ ମନ୍ତ୍ରରେ ଦୀକ୍ଷିତ ହୋଇ ବୀରକିଶୋର ସାଧାରଣଙ୍କ ସେବାକ୍ଷେତ୍ରରେ ଜୀବନ ଅତିବାହିତ କରିଥିଲେ । ଗାନ୍ଧୀ ଥିଲେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ ଈଶ୍ୱରଙ୍କର ଦୂତ, ଅବତାର ସ୍ୱରୂପ । ସତେ ଯେପରିକି ଏହି ଧରାଧାମରେ ତାଙ୍କର ଆବିର୍ଭାବ ହୋଇଥିଲା କୋଟି କୋଟି ଭାରତବାସୀଙ୍କୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବାପାଇଁ । ଅତ୍ୟନ୍ତ ଦୁର୍ଭାଗ୍ୟର କଥା ଯେ ଏହି ଦେଶରେ ଗାନ୍ଧୀଙ୍କ ପରି ଦେବସ୍ୱରୂପ

ହତ୍ୟାକାରୀର ଗୁଳି ସ୍ଫୋଟରେ ପ୍ରାଣ ବିସର୍ଜନ କଲେ । ବୀରକିଶୋର ସେହି ମହାପୁରୁଷଙ୍କୁ ସ୍ମରଣ କରି ଲେଖିଥିଲେ—

"ନିଜ ମୁକ୍ତି ଲାଗି ନ ଥିଲି ସେ ଯୋଗୀ
ବିଶ୍ୱ ମୁକ୍ତି ଲାଗି ହେଲି ବିବାଗୀ
ଦେଶ ଲୋକ ହାତେ ଶେଷ ନିଃଶ୍ୱାସଟି
ଦେଇଗଲି ଶେଷ ପ୍ରାର୍ଥନା ।

ସେ ବିକଳ ହୋଇ କାମନା କରିଛନ୍ତି, ଏହି ବିକଳ ପୃଥିବୀରେ ଆଉଥରେ ସେହି ମହାତ୍ମାଙ୍କର ଆବିର୍ଭାବ ହୁଅନ୍ତା କି ? ତାହାହେଲେ କୋଟି କୋଟି ଲୋକ ପାଗଳ ହୋଇ ତାଙ୍କୁ ଦେଖିଯାଆନ୍ତେ । ଏହି ଜାତିର କଲ୍ୟାଣ କାମନା କରି ସେ ସାରା ଜୀବନ ଉତ୍ସର୍ଗ କରିଥିଲେ । କବିକଣ୍ଠରେ ସ୍ମୃତିଚାରଣର ସେହି କରୁଣ ଅଭିବ୍ୟକ୍ତି ଯେ କୌଣସି ପାଠକର ହୃଦୟରେ ଗଭୀର ଭାବରେ ରେଖାପାତ କରିଥାଏ ।

"କି ଗୀତ ଗାଇବି କହି ଅଜି
ଆମ ଦେହଲି ପଡ଼ିଲି ତଳେ ଭାଜି
ଛଡ଼ା ବୋଇତଟି ଚୂନା ହେଲି ଲୋଟି
ଭରା ଜାହାଜଟି ଗଲି ବୁଡ଼ି ।
ନନ୍ଦନବନରୁ ଆସିଥିଲି ପକ୍ଷୀ
ନ ପାରିଲୁ ତାକୁ ଆମେ ଆଉ ରକ୍ଷି
କେତେ ଦୁଃଖ ସହି ରାମନାମ କହି
ଗୁଳି ସ୍ଫୋଟେ ଆଖି ଦେଲି ବୁଜି ।
ବିନା ଯୁଦ୍ଧେ ଆଣିଦେଲି ସ୍ୱାଧୀନତା
ମାନବ ଜାତିକି ଦେଇ ନୂଆ ପନ୍ଥା
ସତ୍ୟ ଅହିଂସାର ପୂଜାରୀ ଥିଲି ସେ
ଆମ ହାତେ ପ୍ରାଣ ଗଲି ତେଜି ।

ସମସ୍ତ ଜଗତ ଗାନ୍ଧୀଙ୍କର ଗୁଣଗାନ କରି ଚମତ୍କୃତ ହେଉଛି । ଆମେ ଏ ଦେଶରେ ତାଙ୍କୁ ବୁଝି ମଧ୍ୟ ବୁଝିପାରିଲୁ ନାହିଁ । ତଥାପି କବିଙ୍କର ଶେଷ ଅଭିଳାଷ ହେଲି—

ବିଦାୟ ମାଗୁଣି ଏତିକି
ବଞ୍ଚାଇ ରଖ ତା ନୀତିକି ।

---

# ଜାତୀୟ ଜୀବନର ଅଲିଭା ଜ୍ୟୋତି

କବି ବୀରକିଶୋର ଆଜି ଇହସଂସାରରେ ନିଃଶ୍ୱାସ ପ୍ରଶ୍ୱାସ ଗ୍ରହଣ କରୁନାହାନ୍ତି । ତାଙ୍କର ମାଟିର ଶରୀର ମାଟିରେ ମିଶିଯାଇଛି ଉଣେଇଶ ସହ ଚୌତ୍ରିଶ ମସିହା ଅପ୍ରେଲ ଅଠେଇଶ ତାରିଖ ଦିନ । ଦିନୁଁ ଦିନୁଁ ସମୟର ଚକ ଗଡ଼ିଚାଲିଛି । ଜୀବନସ୍ମୃତି କ୍ରମେ କ୍ରମେ ଝାପ୍‌ସା ହୋଇଯାଉଛି । କବି ମରିଯାଏ, କିନ୍ତୁ କବିତା ମରିଯାଏ ନାହିଁ । କବି ବୀରକିଶୋର କବିତା ରଚନା କରି ସ୍ୱାଧୀନତା-ସଂଗ୍ରାମ କାଳରେ ଅସଂଖ୍ୟ ବାନର-ସେନାଙ୍କୁ ପାଗଳ କରିଦେଇଥିଲେ । ମୂଲ୍ୟବୋଧର ଏହି ଅବକ୍ଷୟ ଯୁଗରେ ପରମୁଖାପେକ୍ଷିତା ଆମର ଜାତୀୟ ଜୀବନକୁ ସମ୍ପୂର୍ଣ୍ଣ ଗ୍ରାସ କରିବାକୁ ବସିଥିବା ସମୟରେ କବିଙ୍କର ଚେତାବନୀ ମନେପଡ଼ିଯାଏ ଏହିପରି—

"ଆମ ନିଜ କଥା ନିଜେ ନ ଭାବିଲେ
ପର କେହି କିଛି ଭାବିବେ ନାହିଁ,
ଆମ ଯୋଗ୍ୟପଣ ଦେଖିଲେ ସଂସାର
ସମସ୍ତେ ଡାକିବେ ଆସ ହେ ଭାଇ ।"

ଆତ୍ମମର୍ଯ୍ୟାଦାବୋଧ ଓ ଅବିରତ ସାଧନା ହେଉଛି ଜାତୀୟ ଉନ୍ମେଷର ଚାବିକାଠି । କବି ବୀରକିଶୋର ଜାତିର ଜଡ଼ତା ବିରୁଦ୍ଧରେ ସଂଗ୍ରାମ କରି ଆସିଥିଲେ । ବୀରକିଶୋର ଥିଲେ ଗଭୀର ଆଶାବାଦୀ । ୧୯୬୯ ଖ୍ରୀଷ୍ଟାବ୍ଦରେ ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ ଗଫୁର ଖାଁ ଭାରତ ପରିଭ୍ରମଣରେ ଆସି ଓଡ଼ିଶା ଭୂମିରେ ସମ୍ବର୍ଦ୍ଧିତ ହୋଇଥିଲେ । ସେ ଥିଲେ ଅବିଭକ୍ତ ଭାରତର ସର୍ବମାନ୍ୟ ନେତା, ଯାହାଙ୍କ ସହିତ କବି ବୀରକିଶୋର କିଛିକାଳ ହଜାରିବାଗ କେନ୍ଦ୍ରଜେଲରେ ସହବନ୍ଦୀ ହୋଇଥିଲେ । ତାଙ୍କରି ଉଦ୍ଦେଶ୍ୟରେ ନିଜର କେତେକ ଜାତୀୟ ସଙ୍ଗୀତ ଇଂରେଜୀରେ ଅନୁବାଦ କରି 'A Rosary' ନାମରେ କବି ଭେଟି ଦେଇଥିଲେ ସୀମାନ୍ତଗାନ୍ଧୀଙ୍କୁ । ସେଥିରେ ସେ ଆଶା ପ୍ରକାଶ କରିଥିଲେ ଯେ ସାମ୍ପ୍ରତିକ କାଳର ଏ ଅନ୍ଧକାର ଅପସରିଯିବ । ରକ୍ତର ହୋରିଖେଳ ଚାଲିଥିବା ଏହି ପୃଥିବୀରେ ମହାତ୍ମା ଗାନ୍ଧୀଙ୍କ ଉତ୍ତରାଧିକାରୀ ଭାବରେ କେହି ଜଣେ ମହାପୁରୁଷ ଆସିବ, ଯାହାର ପ୍ରେରଣାରେ ସତ୍ୟ ଓ ଅହିଂସାର ଜୟଜୟକାର ଉଦ୍‌ଘୋଷିତ ହେବ । ପ୍ରତିଷ୍ଠା ହେବ ଏକ ପ୍ରେମମୟ ବିଶ୍ୱସମାଜ । ତାଙ୍କରି ଭାଷାରେ—Those scientists who are

now engaged in producing the poison to destroy their own fellow human beings will one day feel the divine power of Truth and Ahimsa, and change their minds and work for realising the ideal of a "World State."

ଜଗ ଲୋକମାନର ଜୟ ହେଉ ।

---